ବିଶ୍ୱନାଥ କରଙ୍କ ଦ୍ୱାରା ସଂପାଦିତ

# ଉତ୍କଳ ସାହିତ୍ୟ



# ଅମର ଜୀବନ

ଆନନ୍ଦ ଚନ୍ଦ୍ର ପତି



GPNanda Colln.. Digitized by srujanika@gmail.com

ବିଶ୍ୱନାଥ କରଙ୍କ ଦ୍ୱାରା ସଂପାଦିତ

ଉତ୍କଳ ସାହିତ୍ୟ-୨୪

# ଅମର ଜୀବନ

ସଂଗ୍ରାହକ ଓ ପ୍ରକାଶକ :

ଉତ୍କଳ ସାହିତ୍ୟ ବିକାଶ

କାଳୀଗଳି, କଟକ-୨

ପରିବେଷକ :

ଜେ. ମହାପାତ୍ର ଏଣ୍ଡ କୋ., କଟକ-୨

GPNanda Colln., Digitized by srujanika@gmail.com

# ସୂଚୀପତ୍ର


| ବିଷୟ | ପୃଷ୍ଠା |
| --- | --- |
| ୧ । ରାଜପୁତ ରମଣୀ ତାରାବାଈ | ୧ |
| ୨ । ରାଜପୁତ ରମଣୀ ପଦ୍ମିନୀ | ୬ |
| ୩ । ରାଣା ହାମିର ସିଂହ | ୧୩ |
| ୪ । ରାଜପୁତ ରମଣୀ - ଦେବଳା ଦେବୀ | ୨୨ |
| ୫ । ରାଜପୁତ ରମଣୀ—ଗାନୋରର ରାଣୀ | ୨୬ |
| ୬ । ରାଜା ଅଜିତ ସିଂହ | ୩୧ |
| ୭ । ରାଜା ଯଶୋବନ୍ତ ସିଂହ | ୪୮ |
| ୮ । ରାଣା ପ୍ରତାପ ସିଂହ | ୫୬ |
| ୯ । ରାଣା ସଂଗ୍ରାମ ସିଂହ | ୬୮ |
| ୧୦ । ରମ ଦାଣ | ୭୨ |
| ୧୧ । କବି ହରିକୃଷ୍ଣ | ୭୬ |


GPNanda Colln., Digitized by srujanika@gmail.com

# ରାଜପୁତ ରମଣୀ ତାରାବାଈ

ସଂସାର ଚକ୍ରର କରାଳ ଆବର୍ତ୍ତନକ୍ରମେ ଭାରତୀୟ ଜାତି ଦୁର୍ଗତି ପଙ୍କରେ ନିମଜ୍ଜିତ । ଏହି ଦୁର୍ଦ୍ଦିନ ସମୟରେ "ଭାରତୀୟ ବୀରନାରୀ" କଥା ତେଣିକି ଥାଉ; "ଭାରତୀୟ ବୀର ପୁରୁଷ" ଏହି କଥାଗୁଡ଼ାକ ମଧ୍ୟ କପୋଳ-କଳ୍ପିତ ପରିବୋଧ ହେଉଅଛି । ରାମଚନ୍ଦ୍ର, ଭୀଷ୍ମ, ଅର୍ଜୁନ ପ୍ରଭୃତି ମହାବୀର-ମାନେ ଏକପ୍ରକାର ବାସ୍ତବ ଜଗତରୁ ତିରୋହିତ ହୋଇ କାଳ୍ପନିକ ଜଗତରେ ଅବସ୍ଥାପିତ ହୋଇଅଛନ୍ତି । ସୁଭଦ୍ରା, ପ୍ରମିଳା, ଦ୍ରୌପଦୀ ପ୍ରଭୃତି ବୀର ନାରୀ-ବୃନ୍ଦଙ୍କ କଥା ମଧ୍ୟ ତଦ୍ରୂପ । କିନ୍ତୁ ଯାହାହେଉ, ହିନ୍ଦୁ ସଭ୍ୟତା ଓ ମୁସଲମାନ ସଭ୍ୟତାର ସଂଘର୍ଷଣ କାଳ ମଧ୍ୟରେ ଭାରତୀୟ ବୀରତ୍ୱର ଯେଉଁ ଅଗ୍ନିମୟ ସ୍ଫୁଲିଙ୍ଗମାନ ପ୍ରକାଶିତ ହୋଇଥିଲା, ସେଗୁଡ଼ିକୁ ବାସ୍ତବ ରାଜ୍ୟରୁ କଳ୍ପନା ରାଜ୍ୟକୁ ତଡ଼ିଦେବାର କୌଣସି ଉପାୟ ନାହିଁ । ଉପାୟ ଥିଲେ ଆଧୁନିକ ଆଳସ୍ୟ-ପରାୟଣ ସାଧାରଣ ଭାରତୀୟ ମନ ତାହା କରିବାକୁ ଛାଡ଼ି ନଥାନ୍ତା । ଭଗବାନଙ୍କ କୃପାରୁ ଓ ଇତିହାସର ପ୍ରସାଦରୁ ସେ ସୁଯୋଗ ବା ଦୁର୍ଯୋଗ ଘଟିନାହିଁ । ଏଣୁ ଅନେକ ବୀର ନାରୀଙ୍କ କୀର୍ତ୍ତି କାହାଣୀ ବର୍ତ୍ତମାନ ଦୃଷ୍ଟିଗୋଚର ଓ ଶ୍ରୁତିଗୋଚର ହେଉଅଛି । ଶ୍ରୀମତୀ ତାରାବାଈ ଏହି ବୀର ନାରୀବୃନ୍ଦ ମଧ୍ୟରେ ଅନ୍ୟତମ । ବୀରତ୍ୱ କାହାଣୀ ଆଲୋଚନା କରିବା ଦ୍ୱାରା ଏକପ୍ରକାର ନିର୍ମଳ ଆନନ୍ଦ ଅନୁଭବ କରିବା ମନୁଷ୍ୟ ପକ୍ଷରେ ସ୍ୱଭାବସିଦ୍ଧ । ଏଥିପାଇଁ ଏହି ବୀର ନାରୀଙ୍କ ଚରିତ ଏଠାରେ କିଞ୍ଚିତ୍ ଆଲୋଚିତ ହେଉଅଛି ।

ଅନୁପମ ରୂପ ଲାବଣ୍ୟବତୀ ତାରାଦେବୀ ରାଜସ୍ଥାନର ଅନ୍ତଃପାତୀ ବେଡନୋର ନାମକ କ୍ଷୁଦ୍ର ରାଜ୍ୟର ଅଧିପତି ରାଓ ଶୁରତାନଙ୍କ ଦୁହିତା ଥିଲେ । ରାଓ ଶୁରତାନ ଶୋଲାଙ୍କି ବଂଶୀୟ ଥିଲେ ଏବଂ ଇତିହାସ ପ୍ରସିଦ୍ଧା ରୁକ୍ମିଣୀକଳ୍ପା ରାଜସିଂହମହିଷୀ ଚଞ୍ଚଳ କୁମାରୀ ଯେଉଁ ରୂପନଗର ରାଜବଂଶରୁ ସମ୍ଭୂତ ହୋଇଥିଲେ, ସେହି ରାଜବଂଶର ପ୍ରତିଷ୍ଠାତା ଓ ପୂର୍ବପୁରୁଷ ରାଓ ଶୁରତାନଙ୍କ ଭ୍ରାତା ଓ ତାରାବାଈଙ୍କ ପିତୃବ୍ୟ ଥିଲେ । ଆନହାଲବାରର ରାଜାମାନେ ଏହି ଶୋଲାଙ୍କି ବଂଶର ପୂର୍ବପୁରୁଷ ଥିଲେ । ଶୋଲାଙ୍କିମାନେ ସେଠାରୁ ଆଲାଉଦ୍ଦିନଙ୍କ ଦ୍ୱାରା ବିତାଡ଼ିତ ହୋଇ ତ୍ରୟୋଦଶ ଶତାବ୍ଦୀରେ ମଧ୍ୟ ଭାରତକୁ ଯାତ୍ରା କଲେ ଓ ସେଠାରେ ବୁନାସ ନଦୀ ତୀରବର୍ତ୍ତୀ 'ଟଙ୍କ-ଥୋଦା' ନାମକ ଦୁର୍ଗ ଓ ତତ୍‌ସଂଲଗ୍ନ ଭୂମିମାନ ଅଧିକାର କଲେ । ପଞ୍ଚଦଶ ଶତାବ୍ଦୀର ଶେଷଭାଗରେ ରାଓ ଶୁରତାନ ଲିଲ୍ଲା ନାମକ ଜନୈକ ଆଫଗାନ ଦ୍ୱାରା 'ଥୋଦା' ଦୁର୍ଗରୁ ବିତାଡ଼ିତ ହୋଇ ଆରାବଳୀର ପାଦଦେଶବର୍ତ୍ତୀ ବେଡ଼ନୋର ନାମକ ସ୍ଥାନ ଅଧିକାର କଲେ । ଏହି ସ୍ଥାନରେ ତାରାଦେବୀ ସ୍ୱକୀୟ ବଂଶର ପୂର୍ବ ଗୌରବ

GPNanda Colln., Digitized by srujanika@gmail.com

ସ୍ମରଣ ପୂର୍ବକ ତହିଁର ଘନ ଘନ ବିପତ୍‌ପାତ ଦ୍ୱାରା ଉତ୍ତେଜିତ ହୋଇ ସ୍ତ୍ରୀଜନୋଚିତ ବେଶଭୂଷା ଓ କାର୍ଯ୍ୟ ଅବଜ୍ଞା ସହକାରେ ପରିତ୍ୟାଗ କରି ଯୁଦ୍ଧ ଘୋଟକ ଚଳାଇବାକୁ ଏବଂ ଦ୍ରୁତ ବେଗରେ ଧାବମାନ ଘୋଟକ ପୃଷ୍ଠରେ ଆରୂଢ଼ ଥାଇ ଅବ୍ୟର୍ଥ ଲକ୍ଷରେ ବାଣ ନିକ୍ଷେପ କରିବାକୁ ଶିକ୍ଷା କଲେ । ରାଓ ଶୁରତାନ ଅଶ୍ୱାରୋହୀ ସେନାଦ୍ୱାରା ପରିବୃତ୍ତ ହୋଇ ଆପଣାର ପୈତୃକ ଦୁର୍ଗ 'ଖୋଦା'ର ଉଦ୍ଧାର ନିମିତ୍ତ ଅନେକ ଥର ଯୁଦ୍ଧଯାତ୍ରା କରିଥିଲେହେଁ ବାରମ୍ବାର ଅକୃତକାର୍ଯ୍ୟ ହୋଇଥିଲେ । ଧନୁର୍ବାଣଧାରିଣୀ ତାରାଦେବୀ ତେଜସ୍ୱୀ ଘୋଟକୋପରି ଆରୂଢ଼ ହୋଇ ଏହି ସମସ୍ତ ଯୁଦ୍ଧଯାତ୍ରାରେ ଯୋଗଦାନ କରୁଥିଲେ । ଏହାଙ୍କର ଧନୁସ୍ତୂଣୀର ଭୂଷିତା ଯୁଦ୍ଧୋଦ୍ୟତା ଉଗ୍ରମୂର୍ତ୍ତି ବିଷୟ ଭାବିଲାବେଳେ ଗ୍ରୀକ୍ ପୁରାଣପ୍ରସିଦ୍ଧା ଚିରକୌମାରବ୍ରତଧାରିଣୀ ଧନୁର୍ବାଣବିଶୋଭିତା ଡାଏନା (Diana) ଦେବୀଙ୍କ କଥା ସ୍ମୃତି ପଥାରୂଢ଼ ହୁଏ ।

ଇତି ମଧ୍ୟରେ ତାରାଦେବୀଙ୍କ ଯଶଃସୌରଭ ଚତୁର୍ଦ୍ଦିଗରେ ପରିବ୍ୟାପ୍ତ ହେବାକୁ ଲାଗିଲା । ତାଙ୍କର ଅସାଧାରଣ ବୀରତ୍ୱ ଓ ଯୁଦ୍ଧପ୍ରିୟତା ଦ୍ୱାରା ଆକୃଷ୍ଟ ହୋଇ ତଦାନୀନ୍ତନ ମିବାରର ରାଣା ରାୟମଲ୍ଲଙ୍କ ତୃତୀୟ ପୁତ୍ର ଓ ଇତିହାସ ପ୍ରସିଦ୍ଧ ରାଣା ସଂଗ୍ରାମ ସିଂହଙ୍କ କନିଷ୍ଠ ସହୋଦର ବୀରବର ଜୟମଲ୍ଲ ତାରାଦେବୀଙ୍କ ପାଣିଗ୍ରହଣାର୍ଥେ ସ୍ୱୟଂ ପ୍ରାର୍ଥୀ ହେଲେ । ଜନ୍ମଭୂମିବତ୍ସଳା ଓ ବେଢ଼ନୋର ରାଜ୍ୟର ତାରାସ୍ୱରୂପିଣୀ ତାରାଦେବୀ ଏହା ଶୁଣି ତତ୍‌କ୍ଷଣାତ୍ ଉତ୍ତର କଲେ, "ତୁମ୍ଭେ 'ଖୋଦା' ଦୁର୍ଗ ଉଦ୍ଧାର କରିଦିଅ, ତାହାହେଲେ ମୁଁ ନିଶ୍ଚୟ ତୁମ୍ଭର ହେବି ।" ଜୟମଲ୍ଲ ଏଥିରେ ସମ୍ମତ ହେଲେ ସତ୍ୟ କିନ୍ତୁ 'ଖୋଦା' ଉଦ୍ଧାର କରିବା ପୂର୍ବରୁ କନ୍ୟାକୁ ପାଇବା ପାଇଁ ଜିଦ୍ ଧରିବା ଦ୍ୱାରା ଅଭଦ୍ରତା ପ୍ରକାଶ କରିବାରୁ ଶୁରତାନ କ୍ରୁଦ୍ଧ ହୋଇ ତାଙ୍କୁ ବଧ କଲେ ।

ଈଶ୍ୱର ଯାହା କରନ୍ତି ତାହା ଭଲପାଇଁ କରନ୍ତି । ଅଭଦ୍ର ଜୟମଲ୍ଲ ସର୍ବ-ସଦ୍‌ଗୁଣା ସମରଜ୍ଞତା ବୀର କୁମାରୀ ତାରା ଦେବୀଙ୍କର ଯୋଗ୍ୟ ପାତ୍ର ନଥିଲେ । ତାଙ୍କର ଯୋଗ୍ୟ ପତି ତାଙ୍କରି (ଜୟମଲ୍ଲ) ଅଗ୍ରଜ ଓ ସଂଗ୍ରାମଙ୍କ ଅନୁଜ ଅମିତତେଜା ପୃଥ୍ୱୀରାଜ । ଏହି ବୀର ପୁରୁଷଙ୍କ ଅଗ୍ନିସଙ୍କାଶ ତେଜଃପୁଞ୍ଜ ଓ କୀର୍ତ୍ତିକଳାପ ଲେଖି ବସିଲେ ଗୋଟିଏ ସ୍ୱତନ୍ତ୍ର ପ୍ରବନ୍ଧ ହେବ । କିନ୍ତୁ ଏଠାରେ ତାଙ୍କର ଯେତିକି ସମ୍ପର୍କ ଅଛି, ସେତିକି ମାତ୍ର ବର୍ଣ୍ଣନୀୟ । ପୃଥ୍ୱୀରାଜ ଆପଣାର ନିତାନ୍ତ କୋପନ ସ୍ୱଭାବ ହେତୁରୁ ପିତାଙ୍କ ଦ୍ୱାରା ନିର୍ବାସିତ ହୋଇଥିଲେ ଏବଂ ଜୟମଲ୍ଲଙ୍କ ମୃତ୍ୟୁ କାଳରେ ମାରବାର ରାଜ୍ୟରେ ନିର୍ବାସନ ଦଣ୍ଡ ଭୋଗ କରୁଥିଲେ । ବେଢ଼ନୋରଠାରେ ଜୟମଲ୍ଲଙ୍କ ମୃତ୍ୟୁ ସମ୍ବାଦ ଓ ତାରାଦେବୀଙ୍କର ତାଦୃଶ ପଣ ବିଷୟ ଶ୍ରବଣ କରି ପୃଥ୍ୱୀରାଜ ସେହି ବୀରବାଳାଙ୍କୁ ଲାଭ କରିବାକୁ ପ୍ରତିଜ୍ଞାବଦ୍ଧ ହେଲେ । ଏଣେ ତାରାଦେବୀ ବହୁମୁଖୀ ଜନଶ୍ରୁତି ମୁଖରେ ବୀର ଶ୍ରେଷ୍ଠ ପୃଥ୍ୱୀରାଜଙ୍କ କୀର୍ତ୍ତିକଳାପ ବିଷୟ ଅବଗତ ହୋଇ ତାଙ୍କ ପ୍ରତି ଆକୃଷ୍ଟ ହୋଇପଡ଼ିଲେ । ପୁଣି ସଦୃଶନାମା ଚୌହାନ କୁଳରବି ପୃଥ୍ୱୀରାଜଙ୍କର ଅନେକ ସଦ୍‌ଗୁଣ ତାଙ୍କଠାରେ ବିଦ୍ୟମାନ ଥିବାର ଜାଣିପାରି ତାରାଙ୍କ ମନ ଏକାବେଳକେ ଦ୍ରବୀଭୂତ ହୋଇଗଲା । ଏଣୁ 'ଖୋଦା' ଦୁର୍ଗ ଉଦ୍ଧାର ନ କଲେ ମୁଁ ପ୍ରକୃତ ରାଜପୁତ ନୁହେଁ" ପୃଥ୍ୱୀରାଜ ଏତିକି କହିଲା ମାତ୍ରକେ ତାରା ପିତାଙ୍କ ଅନୁମତି ନେଇ ତାଙ୍କର ସହଧର୍ମିଣୀ ହେବାକୁ ସମ୍ମତ ହେଲେ । ଦୁର୍ଗୋଦ୍ଧାର ନିମିତ୍ତ 'ମହରମ' ଦିବସ ନିରୂପିତ ହେଲା । ପୃଥ୍ୱୀରାଜ

GPNanda Colln., Digitized by srujanika@gmail.com

ପାଞ୍ଚଶତ ଉତ୍ତମ ଅଶ୍ୱାରୋହୀ ସୈନ୍ୟ ଓ ତାରାଦେବୀଙ୍କ ସମଭିବ୍ୟାହାରରେ 'ଖୋଦା'ରେ ପହଞ୍ଚିଲେ । ସେତିକିବେଳେ ତାଜିଆଚୌକ ବା ଚତୁଷ୍କଅର କେନ୍ଦ୍ରସ୍ଥଳରେ ସ୍ଥାପିତ ହେଉଥିଲା । ଇତ୍ୟବସରରେ ପୃଥ୍ୱୀରାଜ, ତାରାବାଈ ଓ ପୃଥ୍ୱୀଙ୍କ ଚିରସହଚର ସଙ୍ଗରାଧୀପତି ସ୍ୱକୀୟ ଅଶ୍ୱାରୋହୀ ଦଳ ପରିତ୍ୟାଗ ପୂର୍ବକ ପରକୀୟ ଯାତ୍ରା ଦଳରେ ମିଳିତ ହେଲେ । ଯେତେବେଳେ ଯାତ୍ରାଦଳ ରାଜପ୍ରାସାଦ ପାର୍ଶ୍ୱଦେଇ ଯିବାକୁ ଲାଗିଲା, ତେତେବେଳେ ଆଫଗାନ ରାଜା ଯାତ୍ରାକୁ ଆସିବା ଉଦ୍ଦେଶ୍ୟରେ ସମ୍ମୁଖସ୍ଥ ବାରନ୍ଦାରେ ବେଶଭୂଷା ପରିଧାନ କରୁଥିଲେ । ସେହି ସ୍ଥାନରୁ ଅପରିଚିତ ଅଶ୍ୱାରୋହୀ ତିନିଜଣଙ୍କୁ ଦେଖି ଆଫଗାନ ରାଜା ସେମାନଙ୍କ ପରିଚୟ ପଚାରିବା ମୁହୂର୍ତ୍ତରେ ହିଁ ସେ ପୃଥ୍ୱୀରାଜଙ୍କ ବର୍ଚ୍ଛା ଓ ତାହାଙ୍କ ବୀରପତ୍ନୀଙ୍କ ଧନୁର୍ମୁକ୍ତ ଏକ ପ୍ରଚଣ୍ଡ ବାଣ ଦ୍ୱାରା ଭୀଷଣ ଆଘାତପ୍ରାପ୍ତ ହୋଇ ପ୍ରାସାଦ ତଳରେ ନିପତିତ ହେଲେ । ଏହି ଆକସ୍ମିକ ଓ ଅଲକ୍ଷିତ ବିପତ୍‌ପାତ ହେତୁରୁ ସେହି ଯାତ୍ରାଦଳ ଅତିଶୟ ଭୟାବିଷ୍ଟ ହୋଇପଡିଲେ । ସେମାନେ ଭୟମୁକ୍ତ ହେବା ପୂର୍ବରୁ ସେହି ଅମେୟାତ୍ମା ବୀରନାରୀ ସମେତ ବୀରଦ୍ୱୟ ନଗରର ଦ୍ୱାରଦେଶରେ ପ୍ରବିଷ୍ଟ ହେଲେ । ସେଠାରେ ଗୋଟିଏ ହସ୍ତୀ ସେମାନଙ୍କ ଗତିରୋଧ କରିବାରୁ କ୍ଷିପ୍ରହସ୍ତା ତାରାବାଈ ସ୍ୱକୀୟ ତରବାରିର ସୁଦୃଢ଼ ଆଘାତ ଦ୍ୱାରା ଦନ୍ତାବଳର ସୁଦୀର୍ଘ ଶୁଣ୍ଢକୁ ଦ୍ୱିଖଣ୍ଡିତ କଲେ ଏବଂ ସେହି ହସ୍ତୀଦର ପଳାୟନ କଲାରୁ ସେମାନେ ନିକଟବର୍ତ୍ତୀ ଅପଣାର ଅଶ୍ୱାରୋହୀ ସୈନ୍ୟଦଳ ସହ ମିଳିତ ହେଲେ ।

ଆଫଗାନ ମାନେ ଅସୀଯୁଦ୍ଧ କଲେ, କିନ୍ତୁ ରାଜପୁତମାନଙ୍କ ଭୀଷଣ ଆକ୍ରମଣ ସହ୍ୟ କରି ନ ପାରି ପଳାୟନ କଲେ ଓ କେତେକ ସମ୍ମୁଖ ଯୁଦ୍ଧରେ ପ୍ରାଣ ବିସର୍ଜନ କଲେ । ବୀରବର ପୃଥ୍ୱୀରାଜ ସ୍ୱକୀୟ ଶ୍ୱଶୁର ରାଓ ଶୁରତାନଙ୍କୁ ତାଙ୍କର ପୈତୃକ ସମ୍ପତି, 'ଖୋଦା' ଦୁର୍ଗ ପ୍ରଦାନ କଲେ । ଉକ୍ତ ଆଫଗାନର ଜଣେ ଭ୍ରାତା ଦୁର୍ଗକୁ ପୁନରୁଦ୍ଧାର କରିବାକୁ ଚେଷ୍ଟା କରି ପ୍ରାଣ-ତ୍ୟାଗ କଲେ । ତତ୍‌ପରେ ଆଜମୀରସ୍ଥ ନବାବ ମଲ୍ଲୁ ଖାଁ ପୃଥ୍ୱୀରାଜଙ୍କ କାର୍ଯ୍ୟରେ ବାଧା ଦେବାକୁ ଦୃଢ଼ ସଂକଳ୍ପ କଲେ । କିନ୍ତୁ ପୃଥ୍ୱୀରାଜ ସ୍ୱକୀୟ ସ୍ୱଭାବସିଦ୍ଧ କ୍ଷିପ୍ରକାରିତା ସହକାରେ ଆଜମୀରକୁ ଯାତ୍ରା କରି ଉକ୍ତ ନବାବଙ୍କୁ ତଦୀୟ ଶିବିରରେ ହଠାତ୍ ଅତି ପ୍ରତ୍ୟୁଷ କାଳରେ ଆକ୍ରମଣ କଲେ ଏବଂ ଭୟଙ୍କର ହତ୍ୟାକାଣ୍ଡ ପରେ ଆଜମୀରର ପ୍ରଧାନ ଦୁର୍ଗ 'ଗଡବିଟ୍‌ଲୀ' ଅଧିକାର କଲେ । ରାଜସ୍ଥାନର ଇତିହାସରେ ଲିଖିତ ଅଛି, "ଇଦୃଶ କାର୍ଯ୍ୟ ପରମ୍ପରା ଦ୍ୱାରା ତାଙ୍କର (ପୃଥ୍ୱୀରାଜଙ୍କର) ଯଶ ଦିନକୁ ଦିନ ବର୍ଦ୍ଧିତ ହେବାକୁ ଲାଗିଲା । ଏକ ସହସ୍ର ରାଜପୁତ ତୁଲ୍ୟ ରୂପ ଯଶୋଲିପ୍ସା ଓ ପ୍ରଭୁଭକ୍ତି ଦ୍ୱାରା ପ୍ରଣୋଦିତ ହୋଇ ତାଙ୍କ ଚତୁର୍ଦ୍ଦିଗରେ ଏକତ୍ରିତ ହେଲେ । ସେମାନଙ୍କ ତରବାରି ଶ୍ରେଣୀ ଦ୍ୟୁଲୋକରେ ଉଜ୍ଜ୍ୱଳ କିରଣ ବିକୀରଣ କରୁଥିଲା, ଏବଂ ଭୂଲୋକରେ ଭୟ ଉତ୍ପାଦନ କରୁଥିଲା, କିନ୍ତୁ ଅରକ୍ଷିତର ରକ୍ଷା ସେମାନଙ୍କର ବ୍ରତ ଥିଲା ।"

ଉଲ୍ଲିଖିତ ଉକ୍ତିରୁ ଅନୁମିତ ହେବ ଯେ ପୃଥ୍ୱୀରାଜଙ୍କ ଜୀବନ ନିରନ୍ତର ସାହସୀକ କାର୍ଯ୍ୟ ଓ ଦୁର୍ବଳକୁ ପ୍ରବଳର ଉତ୍ପୀଡ଼ନରୁ ରକ୍ଷା କାର୍ଯ୍ୟରେ ଅତି-ବାହିତ ହେଉଥିଲା । ସେଗୁଡ଼ିକ ବିବୃତ କରିବାର ଏ ଯୋଗ୍ୟ ସ୍ଥାନ ନୁହେଁ । କିନ୍ତୁ ଯେଉଁ ଘଟନାଟିରେ ସେହି ବୀର ଦମ୍ପତିର ଇହଲୀଳା ସମ୍ବରଣ ହୋଇଥିଲା, ସେହିଟି ମାତ୍ର ଏଠାରେ ବର୍ଣ୍ଣନୀୟ ।

GPNanda Colln., Digitized by srujanika@gmail.com

ପୃଥ୍ୱୀରାଜଙ୍କ ଭଗିନୀ ସିରୋହୀରାଜ ପାଭୁରାଓଙ୍କ ପତ୍ନୀ ଥିଲେ । ଏହି ନୃଶଂସ ପ୍ରକୃତି ରାଜା ଆପଣା ପତ୍ନୀଙ୍କ ପ୍ରତି ନିତାନ୍ତ ଅଭଦ୍ର ଓ ନିଷ୍ଠୁର ବ୍ୟବହାର କରୁଥିଲେ । ଏମନ୍ତ କି ରାଜା ଯେତେବେଳେ ସୁରାଦେବୀ ବା ଅହିଫେନ୍ ଦେବଙ୍କ ଉପାସନାରେ ହତଜ୍ଞାନ ହୋଇପଡନ୍ତି, ତେତେବେଳେ ରାଣୀଙ୍କୁ ପର୍ଯ୍ୟଙ୍କ ତଳରେ ସ୍ଥାପନ କରି ତାଙ୍କୁ ଅନାବୃତ ଚଟାଣରେ ଶୟନ କରିବାକୁ ବାଧ୍ୟ କରନ୍ତି । ପୃଥ୍ୱୀ ଭଗିନୀ ଈଦୃଶ ଅତ୍ୟାଚାରରୁ ଉଦ୍ଧାର ପାଇବା ଲାଗି ଭ୍ରାତାଙ୍କ ନିକଟକୁ ପତ୍ର ଲେଖିଲେ । ପୃଥ୍ୱୀରାଜ ପତ୍ର ପାଇବା ମାତ୍ରକେ ଯାତ୍ରା କଲେ ଏବଂ ନିଶୀଥ ସମୟରେ ଶିରୋହୀରେ ପହଞ୍ଚି ନିଃଶ୍ରେଣୀ ଦ୍ୱାରା ରାଜପ୍ରସାଦ ଉପରେ ଆରୋହଣ କଲେ ଏବଂ ପ୍ରାଭୁ ରାଓଙ୍କ ଶୟନ ସ୍ଥାନକୁ ଗମନ ପୂର୍ବକ ତାଙ୍କ ନିଦ୍ରାଭଙ୍ଗ କରି ତାଙ୍କ ଗଳାରେ ଖଡଗ୍ ସ୍ଥାପନ କଲେ । ଏହା ଦେଖି ରାଓ ସାହେବ ଅତି ଦୀନ ଭାବରେ ପତ୍ନୀଙ୍କ ନିକଟରେ କ୍ଷମା ପ୍ରାର୍ଥନା କଲେ । ପତ୍ନୀ ପତିଙ୍କର ଦୈନ୍ୟ ଦେଖି ପୂର୍ବକୃତ ଅତ୍ୟାଚାର ବିସ୍ମୃତ ହୋଇ ଭ୍ରାତାଙ୍କୁ ପତିଙ୍କର ଜୀବନ ଭିକ୍ଷା କଲେ । ପୃଥ୍ୱୀରାଜ କହିଲେ, ଯେବେ ସେ ପତ୍ନୀର ପାଦୁକା ଦ୍ୱୟ ସ୍ୱମସ୍ତକୋପରି ଧାରଣ ପୂର୍ବକ ପ୍ରାର୍ଥୀ ରୂପେ ଦଣ୍ଡାୟମାନ ହେବ ଓ ପତ୍ନୀର ପାଦଦ୍ୱୟ ସ୍ପର୍ଶ କରିବେ, ତାହାହେଲେ ସେ ଜୀବନେଦାନ କରିବେ । ରାଓ ସାହେବ ଏହି ଆଜ୍ଞା ପାଳନ କରିବାରୁ ବୀର ହୃଦୟ ପୃଥ୍ୱୀରାଜ ତାଙ୍କୁ କ୍ଷମା ଦାନ କରି ସସ୍ନେହରେ ଆଲିଙ୍ଗନ କଲେ ଏବଂ ପାଞ୍ଚଦିନ ପର୍ଯ୍ୟନ୍ତ ତାଙ୍କର ଆତିଥ୍ୟ ଗ୍ରହଣ କଲେ । କିନ୍ତୁ ଅଯୋଗ୍ୟ ବ୍ୟକ୍ତିକୁ କ୍ଷମା କଲେ ପରିଣାମରେ ତାହା ବିପଦର ନିଦାନ ହୁଏ । ପୃଥ୍ୱୀଙ୍କର ଏହି କ୍ଷମା ତଦ୍ରୂପ ହୋଇଗଲା । ପ୍ରାଭୁ ରାଓ ଏକ ପ୍ରକାର ମିଷ୍ଟାନ୍ନ ପ୍ରସ୍ତୁତ କରିବା ସକାଶେ ପ୍ରସିଦ୍ଧ ଥିଲେ । ବିଦାୟ କାଳରେ ସେ ଏଥିରୁ କିଛି ପୃଥ୍ୱୀରାଜଙ୍କୁ ଉପଢୌକନ ଦେଇଥିଲେ । ପୃଥ୍ୱୀରାଜ ସ୍ୱକୀୟ ବାସସ୍ଥାନ କମଳମୀର ଦୁର୍ଗର ଅନତି ଦୂରରେ ମାର୍ଗରେ ସେହି ମିଷ୍ଟାନ୍ନରୁ କିଛି ଭୋଜନ କଲେ । କିନ୍ତୁ ଅଳ୍ପ ଦୂରବର୍ତ୍ତୀ "ମାମାଦେବୀ"ଙ୍କ ମନ୍ଦିରରେ ପ୍ରବିଷ୍ଟ ହେଲାକ୍ଷଣି ସେ ଚଳତ୍ ଶକ୍ତି ହୋଇପଡିଲେ । ଏହି ସ୍ଥାନରୁ ସେ ତାରବାଈଙ୍କ ନିକଟକୁ ସମ୍ବାଦ ପଠାଇଲେ ଯେ ସେ ଅବିଳମ୍ବେ ଆସି ତାଙ୍କଠାରୁ ଚିର ବିଦାୟ ଗ୍ରହଣ କରିବେ । କିନ୍ତୁ ମିଷ୍ଟାନ୍ନ ମଧ୍ୟସ୍ଥ ବିଷ ଏପରି ଭୟଙ୍କର ଥିଲା ଯେ ତାରା କମଳମୀର ଦୁର୍ଗରୁ ବହିର୍ଗତ ନ ହେବାରୁ ପୃଥ୍ୱୀରାଜ ମୃତ୍ୟୁ ଗ୍ରାସରେ ପତିତ ହେଲେ । ବୀରପତ୍ନୀ ତାରା ସ୍ୱକୀୟ କର୍ତ୍ତବ୍ୟ ଶୀଘ୍ର ଅବଧାରଣ କଲେ । ଚିତା ସଜ୍ଜିତ ହେଲା ଏବଂ ବୀରରାଣୀ ପୃଥ୍ୱୀରାଜଙ୍କ ମୃତ ଦେହ ଉତ୍ସଙ୍ଗରେ ଧାରଣ ପୂର୍ବକ ବୀର ରମଣୀ ସ୍ୱର୍ଗାରୋହଣ କଲେ । ଶିଶୋଦୀୟ ବୀର ପୃଥ୍ୱୀରାଜ ଓ ବେଦନୋର ଗଗନର ଉଜ୍ଜ୍ୱଳ ନକ୍ଷତ୍ର ତାରା ଦେବୀଙ୍କ ପରିଣାମ ଏହିପରି ହୋଇଥିଲା ।

ପୃଥ୍ୱୀରାଜଙ୍କ ମୃତ୍ୟୁ କାଳରେ ତାଙ୍କ ବୟସ ୨୩ ବର୍ଷ ମାତ୍ର ହୋଇଥିଲା । ଏଣୁ ତାରାଦେବୀଙ୍କ ବୟସ ଅବଶ୍ୟ ତାହାଠାରୁ ନ୍ୟୂନ ହୋଇଥିବ । କିନ୍ତୁ ଏହି ତରୁଣ ବୟସରେ ଏହି ବୀର ଦମ୍ପତି ଏପରି ଯଶୋରାଶି ଅର୍ଜନ କରିଥିଲେ ଯେ, ସେମାନଙ୍କ ଚିତା ଭସ୍ମ ମିବାର ରାଜ୍ୟରେ ଗୋଟିଏ ମନ୍ଦିରରେ ସୁରକ୍ଷିତ ହୋଇ ଦର୍ଶକ ମନରେ ସେହି ବୀରଦମ୍ପତିଙ୍କ ସାହସୀକ କାର୍ଯ୍ୟାବଳୀ ଭାଟପୁତ କବିମାନଙ୍କ ଦ୍ୱାରା ଅମର ସଙ୍ଗୀତରେ ନିବଦ୍ଧ ହୋଇଅଛି । ରାଜପୁତ ମାନେ ବୀରଜାତି, ତେଣୁ ସେମାନେ ବୀରଧର୍ମର ଆଦର କରିଜାଣନ୍ତି ।

GPNanda Colln., Digitized by srujanika@gmail.com

ତାରାବାଈଙ୍କ ପରି ବୀର୍ଯ୍ୟବତୀ, ଯୁଦ୍ଧପ୍ରିୟା ରମଣୀ ପୃଥ୍ୱୀବୀର ଇତିହାସରେ ବିରଳ । ତାଙ୍କର ବୀର୍ଯ୍ୟ ଓ ସାହସ କଥା ଭାବିଲେ ମନ ବିସ୍ମୟ ଓ ଆନନ୍ଦରେ ଅଭିଭୂତ ହୋଇଥାଏ । ବାସ୍ତବିକ ତାଙ୍କ ପରି ଲଳନାମାନେ ପାପକଣ୍ଟକାକୀର୍ଣ୍ଣ ସଂସାରାରଣ୍ୟର ପବିତ୍ର ଗନ୍ଧ ଯୁକ୍ତ କୁସୁମ ତୁଲ୍ୟ, କାରଣ ଯେଉଁଠାରେ ବୀରତ୍ୱ ଓ ସତ୍‌ସାହାସ, ସେହିଠାରେ ପବିତ୍ରତା । ମାତୃଭୂମି ପ୍ରତି ଅଚଳ ଭକ୍ତି ତାଙ୍କ ପବିତ୍ରତାର ପରିଚାୟକ । "ଯେ ମୋର ପୈତୃକ ଭୂମି ଉଦ୍ଧାର କରିଦେବ, ସେ ମୋର ପତି ହେବ" ଏପରି ଅଟଳ ପ୍ରତିଜ୍ଞା କେତେ ଜଣ ସ୍ତ୍ରୀ କରିପାରନ୍ତି ? ଅନ୍ୟାନ୍ୟ ସଦ୍‌ଗୁଣାବଳୀ ମଧ୍ୟରେ ଏହିଟି ତାଙ୍କ ଚରିତ୍ରର ବିଶେଷ ଲକ୍ଷଣ ଓ ଏଥିରୁ ମହତ୍ତା ଶିକ୍ଷାଲାଭ କରାଯାଇପାରେ ।

GPNanda Colln., Digitized by srujanika@gmail.com

# ରାଜପୁତ ରମଣୀ ପଦ୍ମିନୀ

ପଦ୍ମିନୀ ମିବାରର ରାଣା ଭୀମ ସିଂହଙ୍କ ମହିଷୀ ଥିଲେ । ଟଡ୍ ସାହେବଙ୍କ ମତରେ ତାଙ୍କର ଅନୁପମ ସୌନ୍ଦର୍ଯ୍ୟ ହେତୁରୁ ତାଙ୍କୁ 'ପଦ୍ମିନୀ' ଏହି ନାମଟି ଦିଆ ଯାଇଥିଲା । ଅର୍ଥାତ୍ ସେ ସାର୍ଥକ ନାମ୍ନୀ ଥିଲେ । ଶାସ୍ତ୍ରରେ ପଦ୍ମିନୀ ଲକ୍ଷଣ ଯେପରି ବର୍ଣ୍ଣିତ ହୋଇଅଛି, ତହିଁରୁ ସୁସ୍ପଷ୍ଟ ରୂପେ ପ୍ରତୀୟମାନ ହେବ ଯେ ଏହି ବୀର ରମଣୀଙ୍କ ରୂପଲାବଣ୍ୟ ଅସାଧାରଣ ଥିଲା । କିନ୍ତୁ ଏହି ବାହ୍ୟ ସୌନ୍ଦର୍ଯ୍ୟ ତାଙ୍କର ଅଲୌକିକ ଅଭ୍ୟନ୍ତରୀଣ ସୌନ୍ଦର୍ଯ୍ୟର ଅସ୍ପଷ୍ଟ ବହିର୍ବିକାଶ ମାତ୍ର କହିଲେ ଅତ୍ୟୁକ୍ତି ହେବ ନାହିଁ । ନାରୀର ଅଭ୍ୟନ୍ତରୀଣ ସୌନ୍ଦର୍ଯ୍ୟର ପ୍ରକୃଷ୍ଟ ଉପାଦାନ କଣ ? ସମସ୍ତେ ମୁକ୍ତ କଣ୍ଠରେ କହିବେ, ଏହା ପ୍ରଗାଢ଼ ପତି ଭକ୍ତି । ସୀତା, ସାବିତ୍ରୀ, ଦମୟନ୍ତୀ, ଦ୍ରୌପଦୀ ପ୍ରଭୃତି ଭାରତ ଜନନୀଙ୍କ ବରପୁତ୍ରୀମାନେ ଏଥିର ଜାଜ୍ୱଲ୍ୟମାନ ପ୍ରମାଣ । ବାସ୍ତବିକ ଯେଉଁ ନାରୀର ମାନସସରୋବରରେ ପତି ଭକ୍ତି ପଦ୍ମ ସଦା ପ୍ରଫୁଲ୍ଲ, ସ୍ତ୍ରୀ ଜନୋଚିତ ଅନ୍ୟାନ୍ୟ ସଦ୍‌ଗୁଣନିଚୟ ସେହି ନାରୀକୁ ଆଶ୍ରୟ କରିଥାନ୍ତି । ଯେଉଁ ନାରୀର ହୃଦୟ ମନ୍ଦିରରେ ପତି ରୂପ "ଶିବ" ବିଶୁଦ୍ଧ ପ୍ରୀତି ଚନ୍ଦନ ବିମିଶ୍ରିତ ଭକ୍ତି-ପଦ୍ମ ଦ୍ୱାରା ସର୍ବଦା ପୂଜିତ, ସେହି ନାରୀର ହୃଦୟ ଭକ୍ତଜନ ମନୋହର ଶିବାଳୟ ତୁଲ୍ୟ ସର୍ବଦା ପବିତ୍ର ସୌରଭ ବିକୀରଣ କରୁଥାଏ—ସେହି ନାରୀ ବସ୍ତୁତଃ ଓ ସ୍ୱଭାବତଃ 'ପଦ୍ମିନୀ' ଓ ପଦ୍ମଗନ୍ଧା', ଲଜ୍ଜା ସତ୍‌ସାହସ ପ୍ରଭୃତି ଅନ୍ୟାନ୍ୟ ସଦ୍‌ଗୁଣରାଶି ଏହି ଭକ୍ତି ସୌରଭ ଦ୍ୱାରା ଆକୃଷ୍ଟ ହୋଇ ସେହି ପୁଣ୍ୟ ମନ୍ଦିର ଚତୁଃପାର୍ଶ୍ୱରେ ଆଶ୍ରୟ ଗ୍ରହଣ କରି ପ୍ରହରୀ ତୁଲ୍ୟ ରହିଥାନ୍ତି । ଉପସ୍ଥିତ ରମଣୀରତ୍ନ ଯେ ପୂର୍ବୋକ୍ତ ସତୀକୁଳ ଲଳନାମାନଙ୍କର ଉପଯୁକ୍ତ କନିଷ୍ଠା ଭଗିନୀ ଥିଲେ । ତାଙ୍କ ହୃଦୟର ଯେ ପତି-ଭକ୍ତି ସ୍ରୋତ ପ୍ରଚଣ୍ଡ ବେଗରେ ପ୍ରବାହିତ ହେଉଥିଲା, ତାଙ୍କ ମାନସ ସରୋବରରେ ଯେ ପତିଭକ୍ତି-କମଳ ପ୍ରସ୍ଫୁଟିତ ହୋଇ ଜୀବନକୁ ସୌରଭାନ୍ୱିତ ଓ ଗୌରବାନ୍ୱିତ କରିଥିଲା, ତାହା ନିମ୍ନଲିଖିତ ବିବରଣରୁ କିଞ୍ଚିତ୍ ଉପଲବ୍ଧି ହୋଇପାରେ । ଏହି ସୌରଭ ଏ ପର୍ଯ୍ୟନ୍ତ ଚତୁର୍ଦ୍ଦିଗରେ ବିକୀର୍ଣ୍ଣ ହେଉଅଛି ଓ ଉତ୍ତରୋତ୍ତର ଏହିପରି ବିକୀର୍ଣ୍ଣ ହୋଇ ଜନମନ ମୋହିତ କରୁଥିବ । ଅତଏବ ଈଦୃଶ ବୀରନାରୀଙ୍କ ଚରିତ୍ର କିଞ୍ଚିତ୍ ଆଲୋଚନା କରିବା ଆନନ୍ଦଦାୟକ ଓ ଶିକ୍ଷାପ୍ରଦ, ଏଥିରେ ସନ୍ଦେହ ନାହିଁ ।

ଖିଲିଜି ବଂଶୀୟ ଅଲ୍ଲାଉଦ୍ଦୀନ ଭୀମସିଂହଙ୍କ ସମସାମୟିକ ଥିଲେ । ମୁସଲମାନ ସମ୍ରାଟମାନଙ୍କ ମଧ୍ୟରେ ସେ ଜଣେ ପ୍ରଧାନ ବିଜେତା ଥିଲେ ।

GPNanda Colln., Digitized by srujanika@gmail.com

ତାଙ୍କର ଜୟ ବୈଜୟନ୍ତୀ ଭାରତର ଅନେକ ସ୍ଥାନରେ ଉଡ୍‌ଡୀନ ହୋଇଥିଲା ଏଣୁ ସେ 'ସିକନ୍ଦରସାନୀ ବା ଦ୍ୱିତୀୟ ଆଲେକଜାଣ୍ଡର ନାମରେ ଆପଣାକୁ ଅଭିହିତ କରୁଥିଲେ । କାଳକ୍ରମେ ପଦ୍ମିନୀଙ୍କ ଅଲୌକିକ ରୂପଲାବଣ୍ୟର ସମ୍ବାଦ ତାଙ୍କ କର୍ଣ୍ଣ ଗୋଚର ହେଲା । ସେ ଅବିଳମ୍ବେ ପଦ୍ମିନୀଙ୍କୁ ତଥା ମିବାର ରାଜ୍ୟକୁ ଅଧିକାର କରିବାକୁ ମନସ୍ଥ କରି ମିବାର ରାଜଧାନୀ ଚିତୋର ଦୁର୍ଗ ଅବରୋଧ କଲେ । ଦୀର୍ଘ କାଳ ଅବରୋଧ ଦ୍ୱାରା ଦୁର୍ଗ ଗ୍ରହଣରେ ଅକୃତକାର୍ଯ୍ୟ ହୋଇ କେବଳ ପଦ୍ମିନୀଙ୍କୁ ଦେଲେ ବାହୁଡି ଯିବେ ବୋଲି କହି ଭୀମସିଂହଙ୍କଠାକୁ ଦୂତ ପ୍ରେରଣ କଲେ । କିନ୍ତୁ କେବଳ କଥା ଦ୍ୱାରା କେଶରୀ କ୍ରୋଡ଼ରୁ କେଶରିଣୀକୁ ଘେନିଯିବା ଅସମ୍ଭବ । ଅତଏବ ଆଲ୍ଲା ଏ ପ୍ରସ୍ତାବରେ ବିଫଳ ମନୋରଥ ହେଲେ ।

ପରିଶେଷରେ ଆଲ୍ଲା ନିତାନ୍ତ ଅନ୍ୟୋପାୟ ହୋଇ କୁଟିଳ ନୀତିର ଆଶ୍ରୟ ନେଲେ ଏବଂ ରାଜାଙ୍କ ସହିତ ବନ୍ଧୁତା ସ୍ଥାପନ ପୂର୍ବକ ଏହି ଅନୁରୋଧ କରି ପଠାଇଲେ ଯେ ସେ ଏହି ଅସାଧାରଣ ସୌନ୍ଦର୍ଯ୍ୟବତୀ ଲଳନାଙ୍କ ଆଡକୁ ଥରେ ମାତ୍ର ଅନାଇ କୌତୂହଳ ଚରିତାର୍ଥ କରି ଫେରିଯିବେ । ସରଳ ପ୍ରକୃତି ଭୀମ ସିଂହ ସମ୍ରାଟଙ୍କର ଏତାଦୃଶ କଟାକ୍ଷ ଦେଖି ତାଙ୍କ ପ୍ରସ୍ତାବର କିଞ୍ଚିତ ପରିବର୍ତ୍ତନ କରି କହି ପଠାଇଲେ, ଆପଣ କେବଳ ଦର୍ପଣରେ ପ୍ରତିବିମ୍ବିତ ପଦ୍ମିନୀଙ୍କ ପ୍ରତିମୂର୍ତ୍ତୀ ମାତ୍ର ଦେଖିପାରନ୍ତି । ତାଙ୍କ ନିଜ ମୂର୍ତ୍ତୀ ଦେଖିପାରିବେ ନାହିଁ । ଆଲ୍ଲାଉଦ୍ଦିନ କ'ଣ କରିବେ, ଏହି ପ୍ରସ୍ତାବରେ ସମ୍ମତ ହେଲେ । ରାଜପୁତ୍ର ବିଶ୍ୱାସୀତା ଉପରେ ନିର୍ଭର କରିବାର ଛଳନା କରି କେବଳ ଅତ୍ୟଳ୍ପ ମାତ୍ର ରକ୍ଷୀ ସଙ୍ଗରେ ନେଇ ଚିତୋର ଦୁର୍ଗ ମଧ୍ୟରେ ପ୍ରବେଶ କଲେ ଓ ଆପଣାର ଅଭିଳାଷ ଚରିତାର୍ଥ କରି ବାହୁଡି ଆସିଲେ । ଏପରି କରିବାରେ ତାଙ୍କର ଦୁରଭିସନ୍ଧି ଥିଲା । ସେ ଜାଣନ୍ତି, ରାଜପୁତ୍ର ବିଶ୍ୱାସୀତା ଓ ଆତିଥେୟତା ଅତ୍ୟନ୍ତ ପ୍ରବଳ । ତାଙ୍କୁ ବିଶ୍ୱାସ କଲେ ତାହା ମନରେ ନିଶ୍ଚୟ ବିଶ୍ୱାସର ଉଦ୍ରେକ ହେବା କାରଣ ବିଶ୍ୱାସ ହିଁ ବିଶ୍ୱାସର ଜନୟିତା । ତା ମନରେ ବିଶ୍ୱାସ ଜନ୍ମିଲେ ତାକୁ ଫାନ୍ଦରେ ପକାଇବା ସହଜ ହେବ ଓ ତତ୍‌ପରେ ଆପଣାର ମୁଖ୍ୟ ଉଦ୍ଦେଶ୍ୟର ସାଧନର ମାର୍ଗ ପରିଷ୍କାର ହୋଇଯିବ । ଏଥିପାଇଁ ସେ ଆପଣା ଜୀବନକୁ ଏପରି ସଙ୍କଟାପନ୍ନ କରିଥିଲେ । ତାଙ୍କ ଅଭିସନ୍ଧି ସିଦ୍ଧ ହେଲା । ଆଲ୍ଲାଙ୍କ ବାହୁଡିବା ସମୟରେ ରାଣା ଭୀମ ସିଂହ ଆତିଥେୟତା ଅନୁରୋଧରେ ସମ୍ରାଟଙ୍କୁ ବାଟୋଇ ଦେବା ନିମିତ୍ତ ଦୁର୍ଗର ଉପକଣ୍ଠ ପର୍ଯ୍ୟନ୍ତ ତାଙ୍କ ସଙ୍ଗେ ସଙ୍ଗେ ଆସିଲେ । ଏହିଠାରେ ଆଲ୍ଲା ଏକଦଳ ଗୁପ୍ତ ସୈନ୍ୟ ରଖାଇଥିଲେ । ସେମାନେ ହଠାତ୍ ଭୀମ ସିଂହଙ୍କୁ ବନ୍ଦୀ କରି ମୁସଲମାନ ଶିବିରକୁ ଘେନିଗଲେ । ପଦ୍ମିନୀଙ୍କୁ ସମର୍ପଣ ନକଲେ ରାଣା ମୁକ୍ତି ପାଇବେ ନାହିଁ । ଏହି ସମ୍ବାଦ ପ୍ରଚାରିତ ହେଲା ।

ଏହି ନିଦାରୁଣ ସମ୍ବାଦ ଶ୍ରୁତିଗୋଚର ହୁଅନ୍ତେ ଚିତୋରବାସିବର୍ଗ ନୈରାଶ୍ୟ ସାଗରରେ ନିମଗ୍ନ ହେଲେ ଏବଂ ରାଣାଙ୍କ ଉଦ୍ଧାର ନିମିତ୍ତ ପଦ୍ମିନୀଙ୍କୁ ତ୍ୟାଗ କରିବାକୁ ହେବ କି ନାହିଁ, ଏ ବିଷୟରେ ନାନା ବିଚାର ଚାଲିଲା । କ୍ରମେ ସମ୍ବାଦ ପଦ୍ମିନୀଙ୍କ କର୍ଣ୍ଣଗୋଚର ହେଲା । ମାତ୍ର ସେ ଏଥିରେ ବିନ୍ଦୁମାତ୍ର ଅଧୀର ନ ହୋଇ ଅକ୍ଷୁବ୍ଧ ଚିତ୍ତରେ ଉକ୍ତ ପ୍ରସ୍ତାବରେ ସମ୍ମତି ପ୍ରକାଶ କଲେ । ଏହା କି ବୀରତ୍ୱର ଓ ମହତ୍ତ୍ୱର ଲକ୍ଷଣ ନୁହେଁ ?

GPNanda Colln., Digitized by srujanika@gmail.com

ଉକ୍ତି ଅଛି—

ବିପଦି ଧୈର୍ଯ୍ୟମଥ ଭ୍ୟୁଦୟେ କ୍ଷମା
ସଦସି ବାକ୍‌ପଟୁତା ଯୁଧି ବିକ୍ରମଃ ।
ଯଶସି ଚାଭିରୁଚିର୍ବ୍ୟ ସନଂ ଶ୍ରୁତୌ
ପ୍ରକୃତିସିଦ୍ଧମିଦଂ ହି ମହାତ୍ମନାମ ।

କିନ୍ତୁ ନାରୀର ଏପରି ଧୈର୍ଯ୍ୟ ଓ ସାହସର ନିଦାନ କଣ ?—ଅଚଳା ପତିଭକ୍ତି । ପ୍ରାଣାଧିକ ପତିର ବିପଦ ଦେଖିଲେ ସତୀ ନାରୀର ନବନୀତ କୋମଳ ହୃଦୟରେ ସାହସ ଉଦିତ ହୋଇ ତାହାକୁ ବଜ୍ରସାର କରିଦିଏ । ପତିର ବିପଦରେ ସତୀ ସାବିତ୍ରୀ ସ୍ୱୟଂ ଯମକୁ ସୁଦ୍ଧା ଭୟ କରି ନଥିଲେ । ଏଥିପାଇଁ ସାବିତ୍ରୀ ଜଗଦ୍‌ବନ୍ଦନୀୟା ହୋଇଅଛନ୍ତି । ଭାରତ ଜନନୀଙ୍କ ଶ୍ରେଷ୍ଠ କନ୍ୟା ବିମଳ ଯଶସ୍ୱୀନୀ ଯେଉଁ ସାବିତ୍ରୀ ଦେବୀ ହିନ୍ଦୁ ସମାଜର ଘରେ ଘରେ ପୂଜିତା, ତାଙ୍କରି ପବିତ୍ର ଦୃଷ୍ଟାନ୍ତ ସମ୍ମୁଖରେ ଥାଉଁ ଥାଉଁ କେଉଁ ପତିବ୍ରତା ହିନ୍ଦୁ ନାରୀ ପତିର ବିପଦରେ ଅସୀମ ସାହାସ ଅବଲମ୍ବନ ନ କରିବ ? ପଦ୍ମିନୀ କେବଳ ସାବିତ୍ରୀ ଦେବୀଙ୍କ ପଦାଙ୍କ ଅନୁସରଣ କରିଥିଲେ । ତାଙ୍କ ସାହାସର ପ୍ରଖର କିରଣରେ ଲୋକମାନଙ୍କର ନୈରାଶ୍ୟ-ତିମିର ଅପସାରଣ ହେଲା, ସମୟୋପଯୋଗୀ ଉପାୟମାନ ସୁସ୍ପଷ୍ଟ ରୂପେ ଦୃଷ୍ଟ ହେଲା । ସେ ପତିଙ୍କ ଉଦ୍ଧାର ସକାଶେ ନିଜ ପ୍ରାଣ ବିସର୍ଜନ ଦେବାକୁ ପ୍ରସ୍ତୁତ ଥିଲେ ସତ୍ୟ, କିନ୍ତୁ ଯେଉଁ ଉପାୟ ଦ୍ୱାରା ଆପଣାର ପ୍ରାଣ ରକ୍ଷା ବା ସତୀତ୍ୱ ରକ୍ଷା ହୋଇ ରାଣାଙ୍କର ଉଦ୍ଧାର ସମାଧିତ ହୋଇପାରିବ, ତଦ୍‌ବିଷୟରେ ଆପଣାର ପିତୃବ୍ୟ ଗୋରା ଓ ତଦୀୟ ଭ୍ରାତୃଷ୍ପୁତ୍ର ବାଦଲ ଏହି ବୀର ଦ୍ୱୟଙ୍କ ସହିତ ମନ୍ତ୍ରଣା କରିବାକୁ ଲାଗିଲେ, ମନ୍ତ୍ରଣା ସମାପ୍ତ ଓ ଉପଯୁକ୍ତ ଉପାୟ ସ୍ଥିରୀକୃତ ହେଲା ପରେ ଏହି ସମ୍ବାଦ ଆଲ୍ଲାଙ୍କ ନିକଟକୁ ପ୍ରେରିତ ହେଲା—ପଦ୍ମିନୀ ପ୍ରେରିତ ହେବେ, ଏହା ନିଶ୍ଚିତ କଥା, କିନ୍ତୁ ତାଙ୍କ ନିଜର ଓ ସ୍ୱୟଂ ସମ୍ରାଟଙ୍କ ଉଚ୍ଚପଦର ଉପଯୋଗୀ ସମାରୋହ ଆବଶ୍ୟକ । ସେ ସଖୀବୃନ୍ଦ ଓ ଦାସୀମାନଙ୍କ ଦ୍ୱାରା ପରିବୃତ ହୋଇ ପ୍ରୟାଣ କରିବେ । କେବଳ ଏତିକି ନୁହେଁ, ଯେଉଁମାନେ ଆଉ ତାହାଙ୍କୁ ଦେଖିବେ ନାହିଁ, ସେହି ନାରୀମାନେ ମଧ୍ୟ ତାଙ୍କ ପ୍ରତି ଭକ୍ତିର ଶେଷ ଚିହ୍ନ ପ୍ରଦର୍ଶନ କରିବା ସକାଶେ ତାଙ୍କ ସଙ୍ଗେ ସଙ୍ଗେ ଶିବିର ପର୍ଯ୍ୟନ୍ତ ଯିବେ । ପୁନଶ୍ଚ ଅନ୍ୟ ଲୋକେ ଯେପରି କୌତୁହଳ ବଶତଃ ସ୍ତ୍ରୀ ଜାତିର ମହତ୍ତ୍ୱ ଓ ଲଜ୍ଜା-ଶୀଳତାର ଅଣୁମାତ୍ର ଲଙ୍ଘନ ନ କରନ୍ତି, ତନ୍ନିମିତ୍ତ କଠୋର ଆଦେଶ ପ୍ରଚାରିତ ହେବା ଆବଶ୍ୟକ । ଅଲ୍ଲାଉଦ୍ଦୀନ ବୋଧହୁଏ ପଦ୍ମିନୀ ଲୋଭରେ କିଞ୍ଚିତ ଭ୍ରାନ୍ତ ବୁଦ୍ଧି ହୋଇଥିଲେ, କାରଣ ଲୋଭରୁ ବୁଦ୍ଧି ଭ୍ରଂଶ ହୁଏ । ପୁଣି ପର ସ୍ତ୍ରୀ ପ୍ରତି ଲୋଭ ମହା ଭୟଙ୍କର । ତେଣୁ ସେ ଉକ୍ତ ସମସ୍ତ ବିଷୟରେ ସମ୍ମତ ହେଲେ । ଅନନ୍ତର ଅନ୍ୟୁନ୍ୟ ସାତଶତ ଶିବିକା ସମ୍ରାଟଙ୍କ ଶିବିରକୁ ଯାତ୍ରା କଲା । ପ୍ରତ୍ୟେକ ଶିବିକାରେ ଚିତୋରର ସର୍ବଶ୍ରେଷ୍ଠ ବୀରମାନଙ୍କ ମଧ୍ୟରୁ ଜଣେ ଲେଖାଏଁ ସ୍ତ୍ରୀ ବେଶରେ ବସିଥିଲେ । ପୁଣି ପ୍ରତ୍ୟେକ ଶିବିକା ବାହକ ବେଶୀ ଛ ଜଣ ଗୁପ୍ତାସ୍ତ୍ରଧାରୀ ସୈନିକ ପୁରୁଷଙ୍କ ଦ୍ୱାରା ବାହିତ ହେଲା । ଏହିପରି ପଦ୍ମିନୀ ଆତ୍ମସମର୍ପଣ କରିବା ନିମନ୍ତେ ଆଲ୍ଲାଙ୍କ ଶିବିରରେ ପ୍ରବିଷ୍ଟ ହେଲେ । ଶିବିକାମାନ ଶିବିର ମଧ୍ୟରେ ସ୍ଥାପିତ ହେଲାରୁ ପଦ୍ମିନୀ ପତିଙ୍କ-ଠାରୁ ଚିର ବିଦାୟ ଗ୍ରହଣ କରିବା ସକାଶେ ଆଲ୍ଲାଙ୍କ ଅନୁମତି ପ୍ରାର୍ଥନା କଲେ । ଆଲ୍ଲା ଏହି ନିମନ୍ତେ ଅର୍ଦ୍ଧଘଣ୍ଟା ସମୟ ଦେଲେ । ଏହିପରି ଅନୁମତି ପାଇ

GPNanda Colln., Digitized by srujanika@gmail.com

ରାଣାଙ୍କ ବସ୍ତ୍ରାବାସକୁ ଗମନ କଲେ । ତତ୍ପରେ ଅଳ୍ପ ସଂଖ୍ୟକ ରାଜପୁତ ରାଣାଙ୍କୁ ଏକ ଶିବିକା ମଧ୍ୟରେ ବସାଇ ଶିବିରରୁ ପ୍ରସ୍ଥାନ କଲେ । ମାତ୍ର ଅଧିକ ସଂଖ୍ୟକ ରାଜପୁତ (ସେହି କାଳ୍ପନିକ ସଖୀବୃନ୍ଦ) ମହିଷୀଙ୍କ ସହିତ ଦିଲ୍ଲୀକୁ ଯିବା ନିମିତ୍ତ ସେହିଠାରେ ରହିଲେ । କିନ୍ତୁ ଭୀମ ସିଂହଙ୍କୁ ମଧ୍ୟ ମୁକ୍ତ ଦେବାକୁ ଆଲ୍ଲାଙ୍କର ଇଚ୍ଛା ନଥିଲା । ଏଣୁ ସେ ବିଳମ୍ବ ଦେଖି ଅବିଳମ୍ବେ ପଦ୍ମିନୀଙ୍କ ପ୍ରତ୍ୟାଗମନର ଆଦେଶ ଦେଲେ । କିନ୍ତୁ ତେତେବେଳେ ପଦ୍ମିନୀ ଓ ଭୀମ ସିଂହଙ୍କର ପରିବର୍ତ୍ତରେ ପ୍ରଭୁଭକ୍ତ ରାଜପୁତ ରକ୍ଷିଦଳ ଆପଣା ଆପଣା ଶିବିକା ମଧ୍ୟରୁ ବହିର୍ଗତ ହେଲେ । ମାତ୍ର ଆଲ୍ଲା ମଧ୍ୟ ନିତାନ୍ତ ଅସାବଧାନ ନଥିଲେ । ସେ ତତ୍କ୍ଷଣାତ୍ ସ୍ୱ ସୈନ୍ୟମାନଙ୍କୁ ପଦ୍ମିନୀଙ୍କ ଅନୁଧାବନ କରିବାକୁ ଆଦେଶ ଦେଲେ । କିନ୍ତୁ ଏହି ରାଜପୁତମାନେ ଅନୁଧାବନକାରିମାନଙ୍କର ଗତିରୋଧ କରିବାକୁ ଲାଗିଲେ ଏବଂ ସମ୍ମୁଖ ଯୁଦ୍ଧରେ ସମସ୍ତେ ପ୍ରାଣ ବିସର୍ଜନ କଲେ । ଧନ୍ୟ ପ୍ରଭୁଭକ୍ତି । ଏହି ସୁଯୋଗରେ ଭୀମ ସିଂହ ଓ ପଦ୍ମିନୀ ନିରାପଦରେ ସ୍ୱଦୁର୍ଗରେ ପ୍ରବିଷ୍ଟ ହେଲେ । କିନ୍ତୁ ଆଲ୍ଲାଙ୍କର ଚତୁରଙ୍ଗ ସେନା ରକ୍ଷି ଦଳର ବିନାଶ ସାଧନାନ୍ତର ପୁନର୍ବାର ଚିତୋର ଆକ୍ରମଣ କଲେ । ଦୁର୍ଗର ଦ୍ୱାର-ଦେଶରେ ରାଜପୁତ ସେନା ଓ ମୁସଲମାନ ସେନା ମଧ୍ୟରେ ପୁଣି ତୁମୂଳ ଯୁଦ୍ଧ ସଂଘଟିତ ହେଲା । ଗୋରା ଓ ବାଦଲଙ୍କ ସେନାପତିତ୍ୱରେ ଚିତୋରର ଶ୍ରେଷ୍ଠ ବୀରବର୍ଗ ଆଲ୍ଲାଙ୍କ ସେନାଙ୍କୁ ଛିନ୍ନଭିନ୍ନ କରି ପକାଇଲେ । ଆଲ୍ଲା ରାଜପୁତ-ମାନଙ୍କର ଈଦୃଶ ଭୟଙ୍କର ଦୃଢ଼ତା ଓ ବୀରତ୍ୱ ସନ୍ଦର୍ଶନରେ ଅତିମାତ୍ର ଭୀତ ହୋଇପଡ଼ିଲେ ଓ ଆପଣାର ମନୋରଥ ସିଦ୍ଧି ବିଷୟରେ ହତାଶ ହୋଇ ଦିଲ୍ଲୀକୁ ପ୍ରତ୍ୟାବର୍ତ୍ତନ କଲେ । ବୋଲିବା ବାହୁଲ୍ୟ ଯେ ଚିତୋରର ସର୍ବଶ୍ରେଷ୍ଠ ବୀରମାନଙ୍କ ମଧ୍ୟରୁ ଅଧିକାଂଶ ଏହି ଯୁଦ୍ଧରେ ସ୍ୱର୍ଗାରୋହଣ କରିଥିଲେ । ଏହା ୧୩୦୦ ଖ୍ରୀ:ଅ: ରେ ଘଟିଥିଲା ।

ଏହି ଯୁଦ୍ଧ ସମ୍ପର୍କରେ ବାଦଲ ଓ ତାଙ୍କ ପିତୃବ୍ୟପତ୍ନୀଙ୍କ ମଧ୍ୟରେ ଯେଉଁ କଥୋପକଥନ ହୋଇଥିଲା, ତାହା ଅତି ଚମତ୍କାର । ବାଦଲଙ୍କ ବୟସ ଦ୍ୱାଦଶ ବର୍ଷ ମାତ୍ର ଥିଲା । କିନ୍ତୁ ଏହିପରି ଅଳ୍ପ ବୟସ୍କ ବାଳକଙ୍କ ଠାରୁ ରାଜପୁତ ଅଦ୍ଭୁତ କାର୍ଯ୍ୟମାନ ପ୍ରତ୍ୟାଶା କରିଥାଏ । ତାହା ନ ହେବ ବା କାହିଁକି ? ଯେଉଁ କ୍ଷତ୍ରିୟ କୁଳରେ ଜନ୍ମ ଗ୍ରହଣ କରି ଚତୁର୍ଦ୍ଦଶ ବୟସ୍କ ଅଭିମନ୍ୟୁ ଏକାକୀ ଏକତ୍ରିତ ଦ୍ରୋଣ ପ୍ରମୁଖ ମହାରଥିମାନଙ୍କୁ ଅନ୍ୟାୟ ଯୁଦ୍ଧର ଆଶ୍ରୟ ନେବାକୁ ବାଧ୍ୟ କରିଥିଲେ ଓ ଯେଉଁ କ୍ଷତ୍ରିୟ ବଂଶାବତଂସ ବାଳକ ଲବ ଓ କୁଶ ମହାବୀର ରାମଚନ୍ଦ୍ର ପ୍ରଭୃତିଙ୍କୁ ଅବଲୀଳା କ୍ରମେ ପରାସ୍ତ କରିଥିଲେ, ସେହି କ୍ଷତ୍ରିୟ କୁଳରେ ଜାତ ହୋଇ ବାଳକ ବାଦଲ ଅଦ୍ଭୁତ କାର୍ଯ୍ୟମାନ ସମ୍ପାଦନ କରିପାରିବ, ଏହା ଆଶ୍ଚର୍ଯ୍ୟର ବିଷୟ ନୁହେଁ । ବାଦଲ ସମ୍ମୁଖ ସମରରେ କ୍ଷତ ବିକ୍ଷତ ଓ ଜୟଶ୍ରୀ ବିମଣ୍ଡିତ ହୋଇ ପ୍ରତ୍ୟାବର୍ତ୍ତନ କରିବା ସମୟରେ ତାଙ୍କ ପିତୃବ୍ୟପତ୍ନୀ ତାଙ୍କୁ ଦେଖି ପଚାରିଲେ, "ମୋହର ପ୍ରଭୁ (ସ୍ୱାମୀ) ଯୁଦ୍ଧରେ କିପରି ବ୍ୟବହାର କରିଥିଲେ କହ । ମୁଁ ତାଙ୍କୁ ଭେଟିବା ପୂର୍ବରୁ ଏହା ଜାଣିବାକୁ ଇଚ୍ଛା କରେଁ ।" କିଶୋର ବୀର ବାଦଲ ଉତ୍ତର କଲେ, "କୃଷକ ଯେପରି ଶସ୍ୟ କ୍ଷେତ୍ରରେ ଶସ୍ୟ କର୍ତ୍ତନ କରେ, ସେ ସେହିପରି ଯୁଦ୍ଧ କ୍ଷେତ୍ରରେ ସମର ଶସ୍ୟ କର୍ତ୍ତନ କରିବାକୁ ଲାଗିଲେ । ମୁଁ ତାଙ୍କର ଆଜ୍ଞା ବହ ଖଡ଼ଗ ସଂଗ୍ରହକ ସ୍ୱରୂପ ତାଙ୍କରି ପଦାଙ୍କ ଅନୁସରଣ କରିଥିଲି । ରକ୍ତାକ୍ତ ଗୌରବ ଶଯ୍ୟାରେ (ଯୁଦ୍ଧ କ୍ଷେତ୍ରରେ) ମୃତ ଶରୀରରାଜି

GPNanda Colln., Digitized by srujanika@gmail.com

ରୂପ କୂଥା (ଗାଲିଚ୍) ବିସ୍ତାର କରି ସେ ବର୍ତ୍ତମାନ ତଦୁପରି ଶୟନ ରହି ଅଛନ୍ତି; ଜଣେ ମୁସଲମାନ ରାଜପୁତ୍ର ତାଙ୍କର ଉପାଧାନ ହୋଇଅଛି ଓ ଶତ୍ରୁମାନଙ୍କ ମୃତ ଦେହ ଚତୁର୍ଦ୍ଦିଗରେ ସ୍ତୂପୀକୃତ ହୋଇ ରହିଅଛି ।" ପୁନର୍ବାର ବୀରନାରୀ ଅତ୍ୟୁତ୍ସାହରେ ପଚାରିଲେ, "ମୋ ପିୟର କିପରି କାର୍ଯ୍ୟ କରିଥିଲେ ମତେ କହ ।"—"ହେ ମାତା, ତାଙ୍କ କାର୍ଯ୍ୟାବଳୀ ବର୍ଣ୍ଣନାତୀତ, ତାଙ୍କୁ ଭୟ କରିବାକୁ ସେ କୌଣସି ଶତ୍ରୁ ଅବଶିଷ୍ଟ ରଖି ନଥିଲେ ।" ଏହା ଶୁଣି ବୀର ନାରୀ ସହାସ୍ୟ ବଦନରେ ବାଳକଠାରୁ ବିଦାୟ ନେଲେ ଏବଂ "ମୋହର ପ୍ରଭୁ (ସ୍ୱାମୀ) ବିଳମ୍ବ ସକାଶେ ମୋତେ ଭର୍ତ୍ସନା କରିବେ, ଏତିକି ମାତ୍ର କହି ଅଗ୍ନି ମଧ୍ୟକୁ ଡେଇଁ ପଡ଼ିଲେ ।

ପଦ୍ମିନୀ ମନ୍ତ୍ରଣା କାଳରେ ଏହିପରି ଉପାୟ ଉଦ୍ଭାବନ କରିଥିଲେ । ଯେଉଁ ଭୀଷଣ ବିପତ୍‌ପାତ ସମୟରେ ସମଗ୍ର ଚିତୋର ବୀର ବର୍ଗ ନୈରାଶ୍ୟରେ ନିମଗ୍ନ, ସେହି ସମୟରେ ଜଣେ ନାରୀ ଧୈର୍ଯ୍ୟ ଓ ସାହସ ଅବଲମ୍ବନ କରି ଈଦୃଶ ଉପାୟ ଉଦ୍ଭାବନ ଓ ବନ୍ଦୋବସ୍ତ କରିବା ପ୍ରକୃତ ବୀରନାରୀତ୍ୱ ଓ ଅସାଧାରଣ ପ୍ରତ୍ୟୁତ୍ପନ୍ନମତିତ୍ୱର ଉଜ୍ଜ୍ୱଳ ପରିଚୟ ନୁହେ କି ? ଏହି ଅବନତିର ଯୁଗରେ ଏହି ବୀରତ୍ୱ କାହାଣୀ କପୋଳକଳ୍ପିତ ପରି ବୋଧ ହୋଇପାରେ, କିନ୍ତୁ ଏହା ରାଜପୁତ ରମଣୀ ପକ୍ଷରେ ଏକ ପ୍ରକାର ନିତ୍ୟ ନୈମିତ୍ତିକ ଘଟନା ଥିଲା । ଏହା ଐତିହାସିକ ସତ୍ୟ ।

ଏଣେ ଅଲ୍ଲାଉଦ୍ଦୀନ ଉକ୍ତ ରୂପେ ପରାସ୍ତ ହେଲା ପରେ ନିଶ୍ଚିନ୍ତ ହୋଇ ବସି ନଥିଲେ । ସେ ଆପଣାର ବଳ ସଂଗ୍ରହୀତ ଓ ଦୃଢ଼ୀକୃତ କରି ୧୩୦୩ ଖ୍ରୀଷ୍ଟାବ୍ଦରେ ପୁନର୍ବାର ଚିତୋର ଆକ୍ରମଣ କଲେ । କିନ୍ତୁ ବିଗତ ଯୁଦ୍ଧରେ ରାଜପୁତମାନଙ୍କର ଯେଉଁ ଭୟଙ୍କର ବଳ କ୍ଷୟ ହୋଇଥିଲା, ତାହା ଏ ପର୍ଯ୍ୟନ୍ତ ପୂରଣ ହୋଇ ପାରିନଥିଲା । ଏଣୁ ଅଲ୍ଲା ଚିତୋର ଅଧିକାର କରିବାକୁ ସମର୍ଥ ହେଲେ । କିନ୍ତୁ ଏ ଘଟନାରେ ଜନ୍ମଭୂମି ସକାଶେ ରାଜପୁତ ଜାତି କିପରି ଆତ୍ମବଳୀ ପ୍ରଦାନ କରିପାରେ, ରାଜପୁତ୍‌ମାନେ ଏଥିର ଗୋଟିଏ ଉଜ୍ଜ୍ୱଳ ଦୃଷ୍ଟାନ୍ତ ଜଗତ ସମକ୍ଷରେ ରଖିବାକୁ ଛାଡ଼ି ନଥିଲେ । ରାଜପୁତ କବି ନିମ୍ନଲିଖିତ ବିବରଣ ଦେଇଅଛନ୍ତି ।

ଦିନେ ରଣା ସମସ୍ତ ଦିବସ ବ୍ୟାପି ଘୋର ଯୁଦ୍ଧ ପରେ ରାତ୍ରିରେ ପଲଙ୍କ ଉପରେ ଶୟନ କରିଅଛନ୍ତି । କିନ୍ତୁ ନିଦ୍ରା ହେଉନାହିଁ, ମାତୃଭୂମିକୁ କି ଉପାୟରେ ରକ୍ଷା କରିବାକୁ ହେବ, ଏହି ଗଭୀର ଚିନ୍ତା ତାଙ୍କ ମନକୁ ଆଲୋଡ଼ିତ କରୁଅଛି । ଏମନ୍ତ ସମୟରେ ସେହି ନିରବ ନିଶିଥ କାଳରେ "ମୁଁ ଭୁଖାହେଁ" ଏହି ଚିତ୍କାର ରବ ଶୁଣାଗଲା । ରଣା ମସ୍ତକ ଉତ୍ତୋଳନ ପୂର୍ବକ ଜ୍ୱଳନ୍ତ ପ୍ରଦୀପ ଆଲୋକରେ ଦେଖିଲେ, ଦିବ୍ୟାଭରଣ ଭୂଷିତା ଚିତୋରର ଅଧିଷ୍ଠାତ୍ରୀ ଦେବୀଙ୍କର ଗାମ୍ଭୀର୍ଯ୍ୟମୟୀ ମୂର୍ତ୍ତି ସ୍ଫଟିକ ସ୍ତମ୍ଭଦ୍ୱୟ ମଧ୍ୟରେ ବିରାଜମାନ । ତାହା ଦେଖି ରଣା ଚିତ୍କାର କରି ଉଠିଲେ—"ମା ! ମୋହର ଅଷ୍ଟସହସ୍ର ଜ୍ଞାତିବର୍ଗ ତୋହ ନିକଟରେ ଆପଣାକୁ ବଳିଦାନ କରିଥିଲେ ସୁଦ୍ଧା ତୋହର କି ଏପର୍ଯ୍ୟନ୍ତ କ୍ଷୁଧା ନିବୃତ୍ତି ହୋଇନାହିଁ ?" —"ମୋହର ରାଜକୀୟ ବଳି ଆବଶ୍ୟକ, ଯେବେ ରାଜମୁକୁଟ ଧାରୀ ଦ୍ୱାଦଶବୀର ଚିତୋର ନିମିତ୍ତ ଆତ୍ମବଳି ପ୍ରଦାନ ନକରିବେ, ତାହାହେଲେ ଏହି ଭୂମି ଏହି ବଂଶରୁ ଖସିଯିବ ।" ଏହା କହି ଦେବୀ ଅନ୍ତର୍ହିତ ହେଲେ ।

GPNanda Colln., Digitized by srujanika@gmail.com

ପ୍ରଭାତରେ ରାଣା ଆପଣାର ଅମାତ୍ୟବର୍ଗଙ୍କ ନିକଟରେ ରାତ୍ରିର ବୃତ୍ତାନ୍ତ ବର୍ଣ୍ଣନା କରିବାରୁ ସେମାନେ ତାଙ୍କ କଥାରେ ବିଶ୍ୱାସ ନକରି ତାଙ୍କର ମତିଭ୍ରମ ହୋଇଥିବାର ବ୍ୟକ୍ତ କଲେ । ରାଣା ଏହା ଶୁଣି ସେମାନଙ୍କୁ ନିଶୀଥ ସମୟରେ ତାଙ୍କ ଶୟନ ସ୍ଥାନକୁ ଆସିବାକୁ ଆଦେଶ କଲେ । ଠିକ୍ ସେହି ସମୟରେ ସେହି ଦେବୀ ମୂର୍ତ୍ତି ପୁନର୍ବାର କହିଲେ, "ସହସ୍ର ସହସ୍ର ଇତର ଲୋକ ଧରାଶାୟୀ ହେଲେ ମୋର କଣ ଗଲା ? ପ୍ରତିଦିନ ଜଣେ ଲେଖାଏଁ ରାଜା ଅଭିଷିକ୍ତ ହୁଅନ୍ତୁ, ଛତ୍ର ଚାମରାଦି ପରିଚ୍ଛଦ ଦ୍ୱାରା ଭୂଷିତ ହୋଇ ସେ ତିନିଦିନ ପର୍ଯ୍ୟନ୍ତ ରାଜତ୍ୱ କରନ୍ତୁ, ଚତୁର୍ଥ ଦିନ ସେ ଶତ୍ରୁର ସମ୍ମୁଖୀନ ହୋଇ ସମ୍ମୁଖ ଯୁଦ୍ଧରେ ଆତ୍ମବଳି ପ୍ରଦାନ କରନ୍ତୁ । ଏହା ହେଲେ ମୁଁ ରହିବି ।" ଏହା ଶୁଣିଲା ମାତ୍ରକେ ରାଜପୁତମାନଙ୍କର ଆନନ୍ଦର ସୀମା ରହିଲା ନାହିଁ । ମାଙ୍କ ସନ୍ତୋଷ ସକାଶେ ପ୍ରାଣକୁ ଉତ୍ସର୍ଗ କରିବାକୁ ହେବ, ପୁଣି ମା ସ୍ୱୟଂ ସମ୍ମୁଖରେ ଉଭା ହୋଇ ସେଥି ସକାଶେ ଆହ୍ୱାନ କରୁଅଛନ୍ତି, ଏହାଠାରୁ ବଳି ବୀର ପ୍ରକୃତି ରାଜକୃତି ରାଜପୁତ ପକ୍ଷରେ ଅଧିକ ଆନନ୍ଦର ବିଷୟ ଆଉ କଣ ହୋଇପାରେ ? କିଏ ଆଗଯିବ, ଏହି ବିଷୟରେ ରାଣାଙ୍କ ଦ୍ୱାଦଶ ପୁତ୍ର ମଧ୍ୟରେ ବିବାଦ ଉପସ୍ଥିତ ହେଲା । ଅରିସିଂହ ସମସ୍ତଙ୍କ ଅଗ୍ରଜ ଥିବାରୁ ସେ କହିଲେ, ମୋର ଆଗ ଯିବା ନ୍ୟାୟ ସଙ୍ଗତ, ତାଙ୍କର ଅଭିଷେକ ଉଦ୍ଘୋଷିତ ହେଲା, ତାଙ୍କ ଉପରେ ରାଜ ଛତ୍ର ଧୃତ ହେଲା ଓ ଚତୁର୍ଥ ଦିନ ସେ ଯୁଦ୍ଧ କ୍ଷେତ୍ରରେ ସମ୍ମୁଖ ଯୁଦ୍ଧରେ ପ୍ରାଣତ୍ୟାଗ କଲେ । ତତ୍ପରେ ଅରିସିଂହଙ୍କ ଅନୁଜ ଅଜୟ ସିଂହ ଯିବାକୁ ଉଦ୍ୟତ ହେଲେ, କିନ୍ତୁ ସେ ତାଙ୍କ ପିତାଙ୍କର ପ୍ରିୟ ପୁତ୍ର ଥିବାରୁ ପିତାଙ୍କ ଅନୁରୋଧରେ ଶେଷ ପର୍ଯ୍ୟନ୍ତ ରହିବାକୁ ସମ୍ମତ ହେଲେ । ଏଗାର ଜଣ ଏହିପରି ଆତ୍ମବଳି ପ୍ରଦାନ କଲା ଉତ୍ତାରେ ରାଣା ଆପଣାର ଅମାତ୍ୟମାନଙ୍କୁ ଡକାଇ କହିଲେ, "ବର୍ତ୍ତମାନ ମୁଁ ନିଜେ ଚିତୋର ସକାଶେ ଆପଣାକୁ ବଳିଦାନ କରିବି । କିନ୍ତୁ ଏହି ଆତ୍ମ ବଳିଦାନ ପୂର୍ବରୁ ଆଉ ଗୋଟିଏ ଭୟଙ୍କର କାର୍ଯ୍ୟ ଅନୁଷ୍ଠିତ ହେବା ଆବଶ୍ୟକ ହେଲା । ରାଜପୁତମାନଙ୍କ ମଧ୍ୟରେ ଜୋହର (Johur) ନାମକ ଗୋଟିଏ ଭୀଷଣ ଉତ୍ସବ ପ୍ରଚଳିତ ଥିଲା ସତୀତ୍ୱଧ୍ୱଂସ ବା ବନ୍ଦିତ୍ୱରୁ ଆପଣାକୁ ରକ୍ଷା କରିବା ସକାଶେ ରାଜପୁତ ରମଣୀମାନେ ଜ୍ୱଳନ୍ତ ଚିତାରେ ଆପଣାକୁ ଦଗଧ୍ କରୁଥିଲେ । ବର୍ତ୍ତମାନ ସେହି ଭୟାବହ କାଣ୍ଡ ଅନୁଷ୍ଠିତ ହେବାର ପ୍ରୟୋଜନ । ଚିତା ପ୍ରସ୍ତୁତ ହେଲା, ଅଗ୍ନି ଧୁ ଧୁ ହୋଇ ପ୍ରଚଣ୍ଡ ଭାବରେ ଜଳିବାକୁ ଲାଗିଲା । ସହସ୍ର ସହସ୍ର ରାଜପୁତ ନାରୀ ଦଳବଦ୍ଧ ହୋଇ ଅନଳ କୁଣ୍ଡରେ ଆତ୍ମାହୁତିପ୍ରଦାନ କରଣାର୍ଥେ ଯାତ୍ରା କରିବାକୁ ଲାଗିଲେ । ବୋଲିବା ବାହୁଲ୍ୟ ଯେ ସୌନ୍ଦର୍ଯ୍ୟ ପ୍ରତିମା ପଦ୍ମିନୀ ଦେବୀ ଏହି ରମଣୀ ଦଳରେ ଅଗ୍ରଗାମିନୀ ଥିଲେ । ଦୁରାତ୍ମା କର୍ତ୍ତୃକ ଅପମାନ-ଭୀତା ରାଜପୁତ ରମଣୀକୁ ଅଗ୍ନିଦେବ ପ୍ରାୟ ସର୍ବଦା ଅଭୟ ପ୍ରଦାନ କରିଥାନ୍ତି ।

ତତ୍ପରେ ରାଣା ଓ ଅଜୟ ସିଂହଙ୍କ ମଧ୍ୟରେ ଯୁଦ୍ଧ ଯାତ୍ରା ବିଷୟରେ ବାଦାନୁବାଦ ହେଲା, କିନ୍ତୁ ପରିଶେଷରେ ପିତାଙ୍କ ମତ ପ୍ରବଳ ହେଲା । ଅଜୟ ସିଂହ ପିତାଙ୍କ ଆଦେଶ ଶିରୋଧାର୍ଯ୍ୟ କରି ଅଳ୍ପ ସଂଖ୍ୟକ ରକ୍ଷୀ ଦଳ ସହ ସ୍ୱ ଦୁର୍ଗରୁ ପ୍ରସ୍ଥାନ କଲେ ଏବଂ ଆରବଳି ମଧ୍ୟସ୍ଥ କୈଲବାରା ନାମକ ନଗରରେ ନିରାପଦରେ ଆଶ୍ରୟ ଗ୍ରହଣ କଲେ । ଏଣେ ରାଣା କୁଳରକ୍ଷା ବିଷୟରେ ସନ୍ଦେହମୁକ୍ତ ହେବାରୁ ଆପଣାର ବୀରପୁତ୍ରମାନଙ୍କର ଅନୁଗମନ

GPNanda Colln., Digitized by srujanika@gmail.com

କରିବାକୁ ପ୍ରସ୍ତୁତ ହେଲେ ଏବଂ ଆପଣାର ପ୍ରଭୁଭକ୍ତ ଅନୁଚରବର୍ଗଙ୍କ ସମଭି-ବ୍ୟାହାରରେ ଆଲ୍ଲାଙ୍କ ମହତୀ ସେନା ସହିତ ତୁମୁଳ ଯୁଦ୍ଧ କରି ଅନେକ ଶତ୍ରୁ ବିନାଶକରଣାନନ୍ତରୁ ସମ୍ମୁଖ ସମରରେ ସ୍ୱର୍ଗାରୋହଣ କଲେ । ଆଲ୍ଲା ଜନଶୂନ୍ୟ ଚିତୋର ରାଜଧାନୀ ଅଧିକାର କଲେ ଏବଂ ପଦ୍ମିନୀ ଓ ଭୀମ ସିଂହଙ୍କ ପ୍ରାସାଦ ବ୍ୟତୀତ ଅନ୍ୟାନ୍ୟ ଅଟ୍ଟାଳିକା ଓ ଦେବ ମନ୍ଦିରମାନଙ୍କର ଧ୍ୱଂସ ସାଧନ କଲେ ।

କିନ୍ତୁ ଏହି ଆତ୍ମବଳିଦାନର ପୁରସ୍କାର ଅଚିରେ ମିଳିଥିଲା । ବୀର ରକ୍ତପାତ କେବେହେଲେ ବୃଥା ହୁଏ ନାହିଁ । ଯୁଦ୍ଧରେ ପତିତ ବୀରରକ୍ତ ଦ୍ୱାରା ଉର୍ବରିକୃତା ଭୂମି ଅଧିକତର ଶକ୍ତିମାନ ବୀରବୃନ୍ଦ ପ୍ରସବ କରେ । ମିବାରରେ ଏଥିର ଜ୍ୱଳନ୍ତ ଦୃଷ୍ଟାନ୍ତ ଦେଖା ଯାଇଥିଲା, କାରଣ ଚିତୋର ଦେବୀଙ୍କର ଭବିଷ୍ୟତ ବାଣୀ ସଫଳ ହୋଇଥିଲା । ରାଣାଙ୍କ ନପ୍ତା, ଅରି ସିଂହଙ୍କ ପୁତ୍ର ଓ ଉତ୍ତରଜୀବୀ ଅଜୟ ସିଂହଙ୍କ ଭ୍ରାତୃଷ୍ପୁତ୍ର ବୀରବର ହାମୀର ସିଂହ ମାତୃଭୂମୀକୁ ଶତ୍ରୁ କବଳରୁ ଉଦ୍ଧାର କରିଥିଲେ ଓ ପୁନର୍ବାର ସଂଗ୍ରାମ ପ୍ରତାପ ଓ ରାଜସିଂହ ପ୍ରଭୃତି ବୀରପୁତ୍ରମାନେ ମିବାର କ୍ରୋଡ ଅଳଂକୃତ କରିଥିଲେ ।

ଏହି କ୍ଷୁଦ୍ର ପ୍ରବନ୍ଧରେ ପଦ୍ମିନୀଙ୍କ ଚରିତ୍ର ପରିସ୍ଫୁଟ ରୂପେ ଚିତ୍ରିତ କରିବା ଅସମ୍ଭବ । ତାଙ୍କ ଜୀବନ ବୃତ୍ତାନ୍ତ ଉଚ୍ଚ ଶ୍ରେଣୀୟ ନାଟକ ବା ଉପନ୍ୟାସର ଉପାଦେୟ ବିଷୟ । କିନ୍ତୁ ପୂର୍ବୋକ୍ତ ବିବରଣରୁ ଏତିକି ସୁସ୍ପଷ୍ଟ ହେଉଅଛି ଯେ, ପଦ୍ମିନୀ ରାଜପୁତ ରମଣୀମାନଙ୍କ ମଧ୍ୟରେ ଜଣେ ଆଦର୍ଶ ପତ୍ନୀ ଥିଲେ । ପତି ଓ ପତ୍ନୀ ପରସ୍ପରର ସହାୟ । ପତି ପତ୍ନୀର ରକ୍ଷକ ସତ୍ୟ, କିନ୍ତୁ ସୁପତ୍ନୀ ମଧ୍ୟ ପତିଙ୍କୁ ବିପଦରୁ ରକ୍ଷା କରିବାର ଦୃଷ୍ଟାନ୍ତ ଇତିହାସରେ ବିରଳ ନୁହେଁ । ସାବିତ୍ରୀଙ୍କ କଥା ପୂର୍ବେ କୁହା ଯାଇଅଛି । ଦ୍ରୌପଦୀ ମଧ୍ୟ ସ୍ୱକୀୟ ଧର୍ମବଳ ଓ ବୁଦ୍ଧି ବଳରେ ଆପଣାର ପତିଙ୍କୁ ତଥା ରାଜ୍ୟକୁ ରକ୍ଷାକରି-ଥିଲେ । ତାଙ୍କରି ତୁଲ୍ୟ ପୁଣ୍ୟବତୀ ନାରୀମାନଙ୍କ ଧର୍ମବଳ ପ୍ରଭାବରୁ କେବଳ ରାଜସ୍ଥାନ ଓ ରାଜପୁତ ଜାତି ନାହିଁକି ସମଗ୍ର ହିନ୍ଦୁସ୍ଥାନ ଓ ହିନ୍ଦୁ ଜାତି ଗୌରବାନ୍ୱିତ ହୋଇଥିଲା ।

GPNanda Colln., Digitized by srujanika@gmail.com

# ରାଣା ହାମିର ସିଂହ

ଆଲ୍ଲାଉଦ୍ଦୀନଙ୍କ ଚିତୋର ଅଧିକାର କାଳରେ ରାଣା ଅଜୟ ସିଂହ ଆରାବଳୀ ପର୍ବତଶ୍ରେଣୀ ମଧ୍ୟସ୍ଥ କୈଲବାରା (Kailwarra) ନାମକ ନଗରରେ ଆଶ୍ରୟ ଗ୍ରହଣ କରିଥିଲେ । ଏହି ନଗରର ଶିରୋନଳା (Shero Nalla) ନାମକ ଗୋଟିଏ ସୁପ୍ରଶସ୍ତ ଉପତ୍ୟକାର ସର୍ବୋଚ୍ଚ ସ୍ଥାନରେ ଅବସ୍ଥିତ । ଏହି ଉପତ୍ୟକା ଏହି ପାର୍ବତ୍ୟ ପ୍ରଦେଶର ଗୋଟିଏ ଅତ୍ୟନ୍ତ ଉର୍ବରା ଜିଲ୍ଲା ଥିଲା । ଏହି ରମଣୀୟ ସ୍ଥାନରେ ଅଜୟ ସିଂହ ବିଶ୍ୱସ୍ତ ଅନୁଚରବର୍ଗ ସହିତ ମାତୃଭୂମିର ଉଦ୍ଧାର ସାଧନ ବ୍ରତରେ ବ୍ରତୀ ହୋଇ କାଳାତିପାତ କରିବାକୁ ଲାଗିଲେ । ରାଜସ୍ଥାନର ଅନ୍ୟାନ୍ୟ ସ୍ୱଦେଶ ଭକ୍ତ ବୀରବୃନ୍ଦଙ୍କୁ ମଧ୍ୟ ଏହି ଆରାବଳୀ ନିଜ କ୍ରୋଡ଼ରେ ଆଶ୍ରୟ ଦାନ କରିଥାଏ । ଜଗଦୀଶ୍ୱର ଏଥିପାଇଁ ଆରାବଳୀର ସୃଷ୍ଟି କରିଥିଲେ ପରା ।

ଅଜୟ ସିଂହ ପ୍ରତି ସର୍ବଶେଷ ପିତୃ ନିର୍ଦ୍ଦେଶ ଏହି ଥିଲା ଯେ, ସେ "ଏକଶତ ବର୍ଷ ପ୍ରାପ୍ତ ହେଲେ (ଅର୍ଥାତ୍ ତାଙ୍କର ମୃତ୍ୟୁ ହେଲେ), ତଦୀୟ ଅଗ୍ରଜ ଅରିସିଂହଙ୍କ ପୁତ୍ର ତାଙ୍କ ଉତ୍ତରାଧିକାରୀ ହେବେ । ଅଜୟ ସିଂହଙ୍କର ନିଜ ପୁତ୍ରମାନଙ୍କଠାରେ ତାଦୃଶ ବିପଦ କାଳୋପଯୋଗୀ ସଦ୍‌ଗୁଣର ଅଭାବ ଥିବାରୁ ସେ ଆନନ୍ଦରେ ପିତାଙ୍କର ଏହି ଆଜ୍ଞା ପାଳନ କରି ଅଗ୍ରଜ ତନୟ ହାମିର ସିଂହଙ୍କୁ ମିବାରର ରାଣା କରିଥିଲେ ।

ଏହି ବୀର ପୁରୁଷ ଜନ୍ମ ବୃତ୍ତାନ୍ତ ଓ ବାଲ୍ୟ ଜୀବନ ଅତ୍ୟନ୍ତ କୌତୁହଳ-ଜନକ । ଏହା ସଂକ୍ଷେପରେ ଏଠାରେ ବିବୃତ ହୋଇପାରେ । ଦିନେ ଅରିସିଂହ ଅଣ୍ଡବା ନାମକ ଅରଣ୍ୟକୁ ପାରିଧି କରିବାକୁ ଯାଇଥିଲେ । ତାଙ୍କ ସଙ୍ଗରେ ରାଜଦରବାରର କେତେକ ସର୍ଦ୍ଦାର ଯୁବକ ମଧ୍ୟ ଯାଇଥିଲେ । ସେମାନେ ଏକ ବରାହର ଅନୁଧାବନ କରୁ କରୁ ଗୋଟିଏ ମକା କିଆରିରେ ପଶିଲେ । ଏହି ସମୟରେ ନବ ଯୌବନା ପ୍ରଫୁଲ୍ଲ ପଦ୍ମାନନା ଏକ ଯୁବତୀ ସେହି ବରାହକୁ ତଡ଼ିଦେବାକୁ ଉଦ୍ୟତା ହେଲା । ଯୁବତୀ ହାତ ଆଠ ହାତ ଲମ୍ବା ଗୋଟିଏ ବୃକ୍ଷ ଉତ୍ପାଟନ ପୂର୍ବକ ତାହାର ଅଗ୍ରଭାଗକୁ ତୀକ୍ଷ୍ଣ କରି ଧାରଣ କଲା । ତତ୍‌ପରେ ମଞ୍ଚୋପରି (ଶସ୍ୟ ଜଗିବା ପାଇଁ ନିର୍ମିତ ଭାଡି) ଆରୋହଣ ପୂର୍ବକ ବରାହକୁ ତଦ୍ୱାରା ବିଦ୍ଧ କଲା ଏବଂ ତାହାକୁ ଘୋସାରି ଘୋସାରି ମୃଗୟାକାରୀମାନଙ୍କ ସମ୍ମୁଖରେ ଛାଡ଼ିଦେଇ ପ୍ରସ୍ଥାନ କଲା । ସେମାନେ ଆପଣା ଦେଶୀୟ ସ୍ତ୍ରୀମାନଙ୍କ ବଳବୀର୍ଯ୍ୟ ପ୍ରକାଶକ ସାହାସୀକ କାର୍ଯ୍ୟମାନ ଦେଖିବାରେ ଚିରଅଭ୍ୟସ୍ତ, ତଥାପି ଏହି ଯୁବତୀର ଉପସ୍ଥିତ କାର୍ଯ୍ୟଟିରେ ସେମାନେ ଅତ୍ୟନ୍ତ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ । ସେମାନେ ସମୀପବର୍ତ୍ତିନୀ କଳନାଦିନୀ ସ୍ୱଚ୍ଛସଲୀଳା ଗୋଟିଏ କ୍ଷୁଦ୍ର ସ୍ରୋତସ୍ୱତୀ ତୀରକୁ ଯାଇ ସେଠାରେ ଖାଦ୍ୟ ପ୍ରସ୍ତୁତ କଲେ । ତତ୍‌ପରେ

GPNanda Colln., Digitized by srujanika@gmail.com

ସମସ୍ତେ ଭୋଜନରେ ବସି ଯେଉଁ ପରମ ସୁନ୍ଦରୀ ଯୁବତୀ ସ୍ୱହସ୍ତରେ ବରାହକୁ ବିଦ୍ଧ କରିଥିଲା, ତାହାର ବାହୁବଳ ସମ୍ବନ୍ଧରେ ନାନା ପ୍ରକାର ଆଲୋଚନା କରିବାକୁ ଲାଗିଲେ । ଏମନ୍ତ ସମୟରେ ସିକା ନିର୍ମୁକ୍ତ (ଚିଟିକିଣି ଦ୍ୱାରା ନିକ୍ଷିପ୍ତ) ଗୋଟିଏ ମୃଣ୍ମୟ ଗୋଲା ଦ୍ୱାରା ରାଜପୁତ୍ରଙ୍କ ଅଶ୍ୱର ଗୋଟିଏ ପଦ ଭଗ୍ନ ହୋଇଗଲା । ଯେଉଁଆଡ଼ୁ ଗୋଲାଟା ଆସିଲା, ସେହି ଆଡ଼କୁ ଅନାଇବାରେ ଦେଖାଗଲା, ସେହି କୁମାରୀମଣି ମଞ୍ଚୋପରି ଦଣ୍ଡାୟମାନ ହୋଇ ଶସ୍ୟଚରୀ ଆକ୍ରମଣକାରୀମାନଙ୍କଠାରୁ ସ୍ୱକ୍ଷେତ୍ରକୁ ରକ୍ଷା କରୁଅଛି । (ରାଜସ୍ଥାନରେ ଏହା ଗୋଟିଏ ରୀତି ଥିଲା ଯେ, ଶସ୍ୟକ୍ଷେତ୍ରର ମଧ୍ୟ ଭାଗରେ ଗୋଟିଏ ଉଚ୍ଚ ଖଡ଼ି ପ୍ରସ୍ତୁତ ହୋଇ ତାହା ଉପରେ ଗୋଟିଏ ପ୍ରହରୀ ବସିଥାଏ; ଗୋଟିଏ ଚିଟିକିଣି ଓ କେତେ ଗୁଡ଼ିଏ ମାଟିଗୋଲା ତାହାର ପ୍ରଧାନ ଅସ୍ତ୍ର ତଦ୍ୱାରା ସେ କାକ, ମୟୂର ପ୍ରଭୃତି ଶସ୍ୟଧ୍ୱଂସକାରୀ ପକ୍ଷୀମାନଙ୍କୁ ଉଡ଼ାଇଦିଏ ।) ଇତି ମଧ୍ୟରେ ଅଶ୍ୱର ଦୁର୍ଦ୍ଦଶା ପ୍ରତି କୁମାରୀର ଦୃଷ୍ଟି ପଡ଼ିଲା । ଏଣୁ ସେ ଓହ୍ଲାଇ ଆସି ରାଜପୁତ୍ରଙ୍କ ନିକଟରେ ଦୁଃଖ ପ୍ରକାଶ କଲା ଓ ପୁନର୍ବାର ଆପଣା କାର୍ଯ୍ୟକୁ ଚାଲିଗଲା । ଦିବସର ମୃଗୟା କାର୍ଯ୍ୟ ଶେଷ ହେଲାରୁ ଅରିସିଂହ ଓ ଅନୁଚରବର୍ଗ ଗୃହକୁ ବାହୁଡ଼ିଲେ । ଯାଉଁ ଯାଉଁ ବାଟରେ ପୁଣି ସେହି କୁମାରୀକୁ ଦେଖିଲେ ମୁଣ୍ଡରେ ମାଠିଆଏ ଦୁଧ ଓ ଦୁଇ ହାତରେ ଦୁଇଗୋଟି ମହିଷ ଛୁଆ ଧରି କୁମାରୀମଣି ଚାଲିଅଛି । ତାହା ସହିତ ଟିକିଏ କୌତୁକ କରିବା ପାଇଁ ଶିକାରୀମାନେ ତାହାର ଦୁଧ ମାଠିଆ ଛଡ଼ିଦେବାକୁ ଇଚ୍ଛା କଲେ ଏବଂ ଜଣେ ଅଶ୍ୱାରୋହୀ ଧୃଷ୍ଟତା ସହକାରେ ତାହା ନିକଟକୁ ଚମକି ଆସିଲା । କିନ୍ତୁ ସେଥିରେ ସେ କିଞ୍ଚିତ୍ ମାତ୍ର ଅପ୍ରତିଭ ନ ହୋଇ ତାହାର ମହିଷ ଛୁଆ ମଧ୍ୟରୁ ଗୋଟିକୁ ଏପରି ଭାବରେ ଅଶ୍ୱାରୋହିର ଘୋଡ଼ାର ଗୋଡ଼ରେ ଛାଡ଼ିଦେଲା ଯେ ଅଶ୍ୱ ଓ ଆରୋହୀ ତତ୍କ୍ଷଣାତ ଭୂପୃଷ୍ଠରେ ପଡ଼ିଗଲେ । ରାଜପୁତ୍ର ତାହା ବିଷୟରେ ଅନୁସନ୍ଧାନ କରି ଜାଣିଲେ ଯେ ସେହି କୁମାରୀ ଚନ୍ଦାନୋ ଜାତୀୟ ଗୋଟିଏ ଦରିଦ୍ର ରାଜପୁତର କନ୍ୟା ଥିଲା । ଏହି ଚନ୍ଦାନୋ ଜାତି ସୁପ୍ରସିଦ୍ଧ ଚୌହାନ ବଂଶର ଗୋଟିଏ ଶାଖା ମାତ୍ର । ପରଦିନ ରାଜପୁତ୍ର ପୁଣି ସେହି ଅଞ୍ଚଳକୁ ଆସି କୁମାରୀର ପିତାଙ୍କୁ ଡକାଇ ପଠାଇଲେ । ପିତୃ ମହାଶୟ ଆସିଲେ ଏବଂ ଅସଂକୁଚିତ ଚିତ୍ତରେ ରାଜପୁତ୍ରଙ୍କ ସନ୍ନିକଟରେ ଉପବେଶନ କଲେ । ଏଥିରେ ସହଚରବର୍ଗ କିଞ୍ଚିତ୍ ଆମୋଦ କରିବାକୁ ଲାଗିଲେ । କିନ୍ତୁ ଅରି ସିଂହ ତାଙ୍କ କନ୍ୟାର ପାଣି ଗ୍ରହଣ କରିବାକୁ ଇଚ୍ଛା ପ୍ରକାଶ କରିବାରୁ ଏହି ଆମୋଦ ଦୂରୀଭୂତ ହେଲା । ପୁଣି ଯେତେବେଳେ ରାଜପୁତ୍ରଙ୍କର ଏହି ଅନୁରୋଧ ପ୍ରତ୍ୟାଖ୍ୟାତ ହେଲା, ସେତେବେଳେ ବିସ୍ମୟ ଆମୋଦଠାରୁ ବଳିପଡ଼ିଲା । ପିତା ଗୃହକୁ ଗମନ କରି କନ୍ୟାର ମାତା ଆଗରେ ସକଳ ବୃତ୍ତାନ୍ତ କହନ୍ତେ ପ୍ରଜ୍ଞାବତୀ ମାତା ସ୍ୱାମୀଙ୍କୁ ଯଥାବିଧି ତିରସ୍କାର ପୂର୍ବକ ପ୍ରତ୍ୟାଖ୍ୟାନ ପ୍ରତ୍ୟାହାର କରିବାକୁ ଓ ରାଜପୁତ୍ରଙ୍କୁ ଅନ୍ୱେଷଣ କରିବାକୁ ଅନୁରୋଧ କଲେ । ବୋଲିବା ବାହୁଲ୍ୟ ଯେ ଅରି ସିଂହଙ୍କ ସହିତ ସେହି କନ୍ୟାର ବିବାହ ହେଲା । 'ଯୋଗ୍ୟଂ, ଯୋଗ୍ୟେନ୍ ଯୋଜୟେତ୍ ।' ହାମିର ସିଂହ ଏହି ଚନ୍ଦାନୋବଂଶୀୟା ରାଜପୁତ ରମଣୀର ପୁତ୍ର ଥିଲେ । ଚିତୋରର ବିପତ୍‌ପାତ ପର୍ଯ୍ୟନ୍ତ ହାମିର ମାତୁଳାଳୟରେ ରହି ପଲ୍ଲୀ ସୁଲଭ ସରଳ ଓ ପବିତ୍ର ଜୀବନଯାପନ କରୁଥିଲେ । ତାଙ୍କ ଶିକ୍ଷାର ଉପଯୁକ୍ତ ବନ୍ଦୋବସ୍ତ କରା ଯାଇଥିଲା । ଏହି ସମୟରେ ତାଙ୍କ ବୟସ ଦ୍ୱାଦଶ ବର୍ଷ ମାତ୍ର ହୋଇଥିଲା ।

ମିବାର ରାଜ୍ୟ ବର୍ତ୍ତମାନ ଦିଲ୍ଲୀର ସୈନ୍ୟମାନଙ୍କ ଦ୍ୱାରା ଅଧିକୃତ । ପୁଣି ପାର୍ବତୀୟ ଦୁଷ୍ଟଲୋକମାନେ ଅଜୟ ସିଂହଙ୍କୁ ଅଥୟ କରୁଥାନ୍ତି । ଏମାନଙ୍କ

GPNanda Colln., Digitized by srujanika@gmail.com

ମଧ୍ୟରେ ମୁଞ୍ଜ ବର୍ଲେଖ୍ନ ନାମକ ଜଣେ ବ୍ୟକ୍ତି ସର୍ବପ୍ରଧାନ । ସେ ଏକଦା ଅଜୟ ସିଂହଙ୍କ ଆଶ୍ରୟ ଭୂମି ଶିରୋନଲା ଜିଲ୍ଲାକୁ ଆକ୍ରମଣ କରି ନିଜେ ରଣାଙ୍କ କପାଳରେ ଖଲ୍ଲ ଘାତ କରିଥିଲା । ରଣାଙ୍କ ସ୍ୱକୀୟ ଦୁଇ ପୁତ୍ର ସୁଜନ ସିଂହ ଓ ଅଜିମ ସିଂହଙ୍କର ବୟସ ଯଥାକ୍ରମେ ଚତୁର୍ଦ୍ଦଶ ଓ ପଞ୍ଚଦଶ ବର୍ଷ ହୋଇଥିଲେ ହେଁ ସେମାନେ ଏହି ବିପଦ୍ କାଳରେ କୌଣସି କାର୍ଯ୍ୟରେ ଆସି ନଥିଲେ । ଏଣୁ ହାମିର ଆହୂତ ହେଲେ ଏବଂ ରଣାଙ୍କଠାରୁ ସମସ୍ତ ଅବଗତ ହୋଇ ମୁଞ୍ଜ ବିରୁଦ୍ଧରେ ଯୁଦ୍ଧଯାତ୍ରା କରିବାକୁ ସ୍ୱୀକୃତ ହେଲେ । ଯାତ୍ରା କାଳରେ ହାମିର ପ୍ରତିଜ୍ଞା କରିଥିଲେ ଯେ ମୁଞ୍ଜକୁ ଜୟ କରି ନ ପାରିଲେ ସେ ଆଉ ଫେରିବେ ନାହିଁ । କିଛିଦିନ ପରେ ଦେଖାଗଲା, ହାମିର ମୁଞ୍ଜର ଛିନ୍ନ ମସ୍ତକକୁ ସ୍ୱକୀୟ ଅଶ୍ୱ ପୃଷ୍ଠପରେ ସ୍ଥାପନ କରି କୈଲବାର ଗିରି ସଂକଟ ମଧ୍ୟରେ ପ୍ରବେଶ କରୁଅଛନ୍ତି । ତତ୍ପରେ ସେ ବିନୀତ ଭାବରେ ପିତୃବ୍ୟଙ୍କ ପଦତଳେ ଜୟଚିହ୍ନ ସ୍ଥାପନ କରି କହିଲେ "ଆପଣଙ୍କ ଶତ୍ରୁର ମସ୍ତକ ଚିହ୍ନନ୍ତୁ ।" ଅଜୟ ସିଂହ ଭ୍ରାତୃଷ୍ପୁତ୍ର ବଦନରେ ସସ୍ନେହ ଚୁମ୍ବନ ଦେଇ କହିଲେ, "ବତ୍ସ ! ବିଧାତା ତୁମ୍ଭ ଲଲାଟପଟରେ ସାମ୍ରାଜ୍ୟ ଲେଖିଅଛନ୍ତି," ଏବଂ ଅବିଳମ୍ବେ ସେହି ରକ୍ତସ୍ରାବୀ ମସ୍ତକରୁ କିଞ୍ଚିତ ରକ୍ତ ନେଇ ହାମିରଙ୍କ ମସ୍ତକରେ 'ଟୀକା' (ଚିତା) ଦେଲେ

ଏହି ଘଟନା ଦ୍ୱାରା ଅଜୟ ସିଂହଙ୍କ ସ୍ୱକୀୟ ପୁତ୍ରମାନଙ୍କ ଭାଗ୍ୟ ମୀମାଂସିତ ହୋଇଗଲା । ଗୋଟିଏ ପୁତ୍ର କୈଲବାରରେ ପ୍ରାଣତ୍ୟାଗ କଲେ । ଅନ୍ୟଟି ସୁଜନ ସିଂହ ସ୍ୱରାଜ୍ୟରେ ରହିଲେ କାଳେ ରାଷ୍ଟ୍ରବିପ୍ଳବ ଘଟିବ, ଏହି ଆଶଙ୍କାରେ ସ୍ଥାନାନ୍ତରକୁ ପ୍ରେରିତ ହେଲେ । କିନ୍ତୁ ରାଜପୁତ୍ର ରକ୍ତର ମହିମା ଅସୀମ । ସେ ଯେଉଁଠାକୁ ଯିବ, ସେଠାରେ ନିଜର ମହତ୍ତ୍ୱ ପ୍ରକାଶ କରିବ । ସୁଜନ ସିଂହ ଦାକ୍ଷିଣାତ୍ୟକୁ ଯାଇ ସେଠାରେ ଆପଣାର ଆଧିପତ୍ୟ ବିସ୍ତାର କରିବାକୁ ଲାଗିଲେ । ଏପରି ଦିନ ଆସିଲା, ଯେତେବେଳେ ତାଙ୍କରି ସନ୍ତାନମାନେ ଭାରତ ରଙ୍ଗଭୂମିରେ ଅଦ୍ଭୁତ କାଣ୍ଡ ଅଭିନୟ କରିଥିଲେ । ଯେଉଁ ପୁଣ୍ୟ ଶ୍ଳୋକ, ପରନ୍ତପ, ଅକ୍ଳିଷ୍ଟକର୍ମା, ବୀରକୁଳାଗ୍ରଗଣ୍ୟ ଶିବଜୀଙ୍କ ଜୟ ଦୁନ୍ଦୁଭି ନାଦରେ ଭାରତ ଗଗନ ବିକମ୍ପିତ ହୋଇଥିଲା, ସୁଜନ ସିଂହ ସେତାରା ସିଂହାସନର ପ୍ରତିଷ୍ଠାତା ସେହି ଶିବଜୀଙ୍କର ପୂର୍ବପୁରୁଷ ଥିଲେ । ସ୍ୱୟଂ ଟଡ୍ ସାହେବ ମିବାର ଇତି ବୃତ୍ତିରୁ ଶିବଜୀଙ୍କ ବଂଶାବଳୀ ଏହି ରୂପେ ଦେଇଅଛନ୍ତି । ଯଥା—ଅଜୟ ସିଂହ, ସୁଜନ ସିଂହ, ଦିଲିପଜୀ, ଶିଓଜୀ, ଭୈରବଜୀ, ଦେବରାଜ, ଖେଲଜୀ, ମାହୁଲଜୀ, ଜନକଜୀ, ସତ୍ୟଜୀ, ଶମ୍ଭୁଜୀ, * ଶିବାଜୀ (ମହାରାଷ୍ଟ୍ର ଜାତିର ପ୍ରତିଷ୍ଠାତା), ଶମ୍ଭୁଜୀ ଓ ରାମରାଜା । ତତ୍ପରେ ପେଶୱାମାନେ ମହାରାଷ୍ଟ୍ର ସିଂହାସନ ଅଧିକାର କଲେ । ଟଡ ସାହେବ ଆହୁରି କହନ୍ତି, ଯେ, ନେପାଳର ଗୋର୍ଖାମାନେ ମଧ୍ୟ ମିବାରରୁ ବିତାଡ଼ିତ ଜନୈକ ମିବାର ବଂଶୀୟ ରାଜପୁତ୍ରର ବଂଶଧର ଅଟନ୍ତି । ପୁଣି ହଣ୍ଟର ସାହେବ ଓ ଅନ୍ୟାନ୍ୟ ପଣ୍ଡିତମାନଙ୍କ ମତରେ ଉତ୍କଳର ଅଧିକାଂଶ ରାଜା ରାଜପୁତ୍ ବଂଶ ସମ୍ଭୂତ । ଏହିପରି ଖୋଜିଲେ ରାଜପୁତ୍ ବଂଶ ରୂପ ମହାବୃକ୍ଷର ଆହୁରି କେତେ ଶାଖା ପ୍ରଶାଖା ଭାରତର ଅନ୍ୟାନ୍ୟ ଅଞ୍ଚଳରେ ବାହାରିପାରେ । ଏଣୁ ବୋଧ ହେଉଅଛି ଯେ ରାଜପୁତ୍ମାନେ ଭାରତର ନାନା ଅଂଶରେ ଖେଳାଇହୋଇ ପଡ଼ିଅଛନ୍ତି । ଏଣୁ ଆଧୁନିକ ଭାରତର ନାନା ଜାତି ମଧ୍ୟରେ ରାଜପୁତ ରକ୍ତ ଗୋଟିଏ ପ୍ରଧାନ

* ଏହା ସମ୍ଭବତଃ ସାହୁଜୀ ହେବ, କାରଣ ଶିବାଜୀ ଶାହାଜୀଙ୍କ ପୁତ୍ର ଥିଲେ । ମୁଦ୍ରାଙ୍କନ ଭ୍ରମରୁ ଏପରି ହୋଇଥିବାର ଅନୁମାନ ।

GPNanda Colln., Digitized by srujanika@gmail.com

ଉପାଦାନ କହିଲେ ନିତାନ୍ତ ଅସଙ୍ଗତ ହେବ ନାହିଁ । ପୁଣି ଐତିହାସିକ ତଥ୍ୟାନ୍ୱେଷୀ ବ୍ୟକ୍ତିମାନେ ଏ ବିଷୟରେ ପରିଶ୍ରମ କରି ଯଦି ଦେଖାଇଦିଅନ୍ତେ ଯେ, ଆଧୁନିକ ଭାରତର ଉତ୍କଳୀୟ, ବଙ୍ଗୀୟ, ମହାରାଷ୍ଟ୍ରୀୟ, ରାଜପୁତ, ଶିଖ, ଗୋର୍ଖା ପ୍ରଭୃତି ବିଭିନ୍ନ ଜାତି ଏକ ମୂଳ ବୃକ୍ଷର ଶାଖା ପ୍ରଶାଖା ମାତ୍ର—ଏକ ମାତୃଜାତିର ସନ୍ତାନସନ୍ତତି ମାତ୍ର—ଏମାନଙ୍କ ମଧ୍ୟରେ ପରସ୍ପର ସହିତ ଘନିଷ୍ଠ ସମ୍ବନ୍ଧ ରହିଅଛି ଏବଂ ପ୍ରତ୍ୟେକ ଶାଖାର ଉନ୍ନତ ବା ଅବନତ ସହିତ ଦୃଢ ଭାବରେ ସମ୍ବନ୍ଧ, ତାହାହେଲେ ପ୍ରତ୍ୟେକ ଜାତିର ତଥା ସମଗ୍ର ଭାରତୀୟ ମହାଜାତିର ଅଶେଷ କଲ୍ୟାଣ ସାଧିତ ହୁଅନ୍ତା । କାରଣ ଜ୍ଞାନ ହିଁ ପରସ୍ପର ସ୍ୱଭାବ ଓ ଐକ୍ୟର ପରମ ସହାୟ, ଆଉ ଅଜ୍ଞାନ ଅସଦ୍ଭାବ ଓ ଅନୈକ୍ୟର— ମୃତ୍ୟୁର ମୂଳକାରଣ ।

ସମ୍ପ୍ରତି ମୁଖ୍ୟ ବିଷୟ ଆଲୋଚନୀୟ । ହାମିର ଏହିପରି ୧୩୦୧ † ଖ୍ରୀଷ୍ଟାବ୍ଦରେ (୧୩୫୬ ଶକାବ୍ଦରେ) ସେହି କୈଳବାରଠାରେ ମିବାରର ରଣା ପଦରେ ଅଭିଷିକ୍ତ ହେଲେ । ନାମରେ ରଣା ହେଲେ ସତ୍ୟ, କିନ୍ତୁ କାର୍ଯ୍ୟରେ ତ ନୁହେଁ । ହାମିର ବୀରପୁରୁଷ, ସେ କି ପଦାର୍ଥ ସମ୍ପର୍କ ଶୂନ୍ୟ ଏହି ପଦ ମାତ୍ରରେ ସନ୍ତୁଷ୍ଟ ହୋଇ ରହିବେ ? ନା ତାହା ହେବ ନାହିଁ, ପ୍ରକୃତରେ ରଣା ହେବାକୁ ହେବ । ଏଣୁ ତାଙ୍କ ହୃଦୟରେ ମାତୃଭୂମିର ଉଦ୍ଧାର ବିଷୟରେ ଅଟଳ ସଂକଳ୍ପ ଜାଗ୍ରତ ହେଲା ଓ ଉତ୍ସାହ ବହ୍ନି ପ୍ରଜ୍ୱଳିତ ହେବାକୁ ଲାଗିଲା । ପୁଣି କୈଳବାରର ଅନନ୍ୟ ଭେଦ୍ୟ ଅବସ୍ଥାନ ଓ ଅପୂର୍ବ ଦୃଶ୍ୟାବଳୀ ଏହି ବହ୍ନିରେ ଅନୁକ୍ଷଣ ଘୃତାହୁତି ପ୍ରଦାନ କରୁଥିଲା । ଏହି ଭୂଖଣ୍ଡର ବିସ୍ତାର ୫୦ ମାଇଲରୁ ଅଧିକ ଓ ଉଚ୍ଚତା ସମତଳ ପ୍ରଦେଶରୁ ବାରଶତ ଫୁଟ ଏବଂ ସମୁଦ୍ର ତଳରୁ ତିନି ସହସ୍ର ଫୁଟ । ଏହା ଚତୁର୍ଦ୍ଦିଗରେ ପର୍ବତମୟ ପ୍ରାଚୀର ଦ୍ୱାରା ସୁରକ୍ଷିତ । ଏହି ପର୍ବତ ଶ୍ରେଣୀର ନାନା ସ୍ଥାନରେ ଅତୀବ ଜଟିଳ ଓ ଦୁର୍ଗମ ପାର୍ବତୀୟ ପଥମାନ ବିଦ୍ୟମାନ । ଏହି ଭୂଖଣ୍ଡ ପୁଣି ଗୋଟିଏ ଗିରି ସଙ୍କଟର ମୂଳଦେଶରେ ଅବସ୍ଥିତ । ଏହି ଗିରିସଙ୍କଟ ବାଟେ ଗଲେ ଆଉ ଗୋଟିଏ ଅଧିକ ଦୁଷ୍ପ୍ରବେଶ୍ୟ ଆଶ୍ରୟ ଭୂମିରେ ପହଞ୍ଚିବାକୁ ହୁଏ । (ଏହି ସ୍ଥାନରେ ପରେ କମଳମୀର ଦୁର୍ଗ ନିର୍ମିତ ହୋଇଥିଲା) କେଉଁଠାରେ କଳକଳ-ନିନାଦିନୀ ତଟିନୀ ପ୍ରବାହିତ ହେଉଅଛି, କେଉଁଠାରେ ଝର୍ଝର ଝଙ୍କାର ପୂର୍ଣ୍ଣ ନିର୍ଝରିଣୀ ଦର୍ଶକ ମନ ହରଣ କରୁଅଛି, କେଉଁଠାରେ ବା ଫୁଲ୍ଲ କୁସୁମିତ ଦ୍ରୁମଦଳଶୋଭିନୀ ଦିଗ୍‌ଦିଗନ୍ତ ବିସ୍ତାରିଣୀ ଅରଣ୍ୟାନୀ ବିରାଜମାନ ରହିଅଛି । ଏହି ଅରଣ୍ୟାନୀମାନ ବହୁ ଗୋଚ୍ଚରଣ ଭୂମି, ମୁନିଜନୋପଯୋଗୀ ଅଶେଷ-ବିଧ ସୁମିଷ୍ଟ ଫଳମୂଳ ରାଶି ଓ ଭୈଷଜ୍ୟ ସମୂହରେ ପରିପୂର୍ଣ୍ଣ । କୃଷିଯୋଗ୍ୟ ଭୂମିର ମଧ୍ୟ ଅଭାବ ନ ଥିଲା । ରାଜପୁତର କର୍ମଠକର ସମ୍ବର୍ଦ୍ଧିତ ଶ୍ୟାମଳ ଶସ୍ୟ ପରିପୂର୍ଣ୍ଣ କ୍ଷେତ୍ରାବଳୀ ସେହି ଅମିତ୍ର ଜନସମାଗମ ରହିତ ସ୍ଥାନରେ ଅପୂର୍ବ ଶୋଭା ପ୍ରକାଶ କରୁଥିଲା । ଅଧିକ କି ବୀରବର ହାମିର ସିଂହ ଏହି ମନୋହର ଭୂଖଣ୍ଡ ମଧ୍ୟରେ ସୁଜଳା, ସୁଫଳା, ମଳୟଜଶୀତଳା, ଶସ୍ୟ-ଶ୍ୟାମଳା, ସୁଖଦା, ବରଦା ମାତୃଭୂମି ମିବାରଭୂମି ତଥା ଭାରତ ଭୂମିର ପ୍ରତିକୃତି

† ଏହି ତାରିଖ ସମ୍ବନ୍ଧରେ ଐତିହାସିକମାନଙ୍କ ମଧ୍ୟରେ ମତାନୈକ୍ୟ ଅଛି । ୧୩୦୩ ଖ୍ରୀଷ୍ଟାବ୍ଦରେ ଆଲ୍ଲା ଚିତୋର ଅଧିକାର କଲାପରେ ଅଜୟ ସିଂହ ଚିତୋର ତ୍ୟାଗ କଲେ । ଅତଏବ ହାମିରଙ୍କ ଅଭିଷେକ ୧୩୦୩ ପରେ ହେବା ଉଚିତ ।

GPNanda Colln., Digitized by srujanika@gmail.com

ପ୍ରତିଦିନ—ପ୍ରତି ମୁହୂର୍ତ୍ତରେ ସନ୍ଦର୍ଶନ କରି ଉନ୍ମତ୍ତ ହେଉଥିଲେ । ଭାରତର କେଉଁ ଅଂଶଟା ଭାରତର ପ୍ରତିକୃତି ନୁହେଁ ? ଏହି ପୁଣ୍ୟ ଉତ୍କଳ ଭୂମି କି ଭାରତମାତାଙ୍କର ପ୍ରତିକୃତି ନୁହେଁ ? ପୁଣ୍ୟତୋୟା ମହାନଦୀ ଉତ୍କଳର ଗଙ୍ଗା, ଅଭ୍ରଭେଦୀ ମାଲ୍ୟଗିରି ଉତ୍କଳର ହିମାଳୟ, କପିଳାସ ଉତ୍କଳର ଦାର୍ଜିଲିଂ, ଭୁବନେଶ୍ୱର ଉତ୍କଳର ଶିବକ୍ଷେତ୍ର ବାରଣସୀ ବୋଲି କଥିତ, ପୁଣି ଜଗନ୍ନାଥ କ୍ଷେତ୍ର । ଏହାକୁ କାହା ସଙ୍ଗେ ତୁଳନା କରିବାକୁ ହେବ ? ତାହା ତାହାରି ସଙ୍ଗେ ତୁଳନୀୟ ଏଣୁ ବାଧ୍ୟ ହୋଇ କହିବାକୁ ପଡୁଛି, ଉତ୍କଳର ଜଗନ୍ନାଥ କ୍ଷେତ୍ର ଭାରତର ଜଗନ୍ନାଥ କ୍ଷେତ୍ର । ଏହିପରି ସାମ୍ୟର ବାକି ନାହିଁ । ତେବେ ପ୍ରତିକୃତି ନହେବ କାହିଁକି ? ସେହିପରି ବଙ୍ଗ, ପଞ୍ଜାବ, ମହାରାଷ୍ଟ୍ର, ମାନ୍ଦ୍ରାଜ ପ୍ରଭୃତି ସ୍ଥାନମାନ ପ୍ରତ୍ୟେକେ ଭାରତ ଜନନୀଙ୍କର ଗୋଟିଏ ଗୋଟିଏ ଉଜ୍ଜ୍ୱଳ ପ୍ରତିକୃତି । ଅତଏବ ବୀର ହୃଦୟ ସୂକ୍ଷ୍ମଦର୍ଶୀ ହାମିର ଆପଣାର ପରମ ରମଣୀୟ ଆରବଲୀ ମଧ୍ୟସ୍ଥ ଆଶ୍ରୟ ଭୂମି ମଧ୍ୟରେ ମାତୃ ପ୍ରତିକୃତି ନିରୀକ୍ଷଣ କରୁଥିବେ, ତହିରେ ଆଶ୍ଚର୍ଯ୍ୟର ବିଷୟ କିଛି ନାହିଁ । ଆମ୍ଭେମାନେ ଅନୁମାନ କରୁ, କେବଳ ଯେ ସେ ମାତାଙ୍କର ଏହି ସ୍ଥୂଳ ଶରୀର ଦେଖୁଥିଲେ, ତାହା ନୁହେଁ । ମାତୃଦେବୀଙ୍କର ସୂକ୍ଷ୍ମ ଶରୀର ଏହି ସ୍ଥୂଳ ଶରୀର ରୂପ ଦର୍ପଣରେ ସଦା ପ୍ରତିବିମ୍ବିତ ହେଉଥିଲା ଆପଣାର ଦାରୁଣ ନିର୍ବାସନ ରଘୁକୁଳ ତିଳକ ଶ୍ରୀରାମଚନ୍ଦ୍ର ଓ ଲକ୍ଷ୍ମୀ ସ୍ୱରୂପିଣୀ ସୀତା ଦେବୀଙ୍କ ପବିତ୍ର ସ୍ମୃତି ତାଙ୍କ ମନରେ ଅପ୍ରତିହତ ଭାବରେ ଜାଗ୍ରତ କରୁଥିଲା । ଲକ୍ଷ୍ମଣ ହନୁମାନ ପ୍ରଭୃତି ମହାବୀର-ମାନେ, ବାଲ୍ମୀକି ଜନକ ପ୍ରଭୃତି ପବିତ୍ର ଯଶା ମୁନିବୃନ୍ଦ ତାଙ୍କ ସ୍ମୃତିଗୋଚର ହେଉଥିଲେ । ଅଧିକ କି ରାମାୟଣ ବର୍ଣ୍ଣିତ ସମସ୍ତ ଘଟନା ଓ ସମସ୍ତ ବୃତ୍ତାନ୍ତର ଚିତ୍ର ସେ ଯେପରି କି ସମ୍ମୁଖରେ ଦେଖୁଥିଲେ ପୁଣି ସେହି ନିଦାରୁଣ ଆତ୍ମାନୁଭବ ପାଣ୍ଡବମାନଙ୍କ ଲୋମାଞ୍ଚକର ପବିତ୍ର ସ୍ମୃତି ତାଙ୍କ ମନରେ ଜାଗ୍ରତ କରୁଥିଲା । ସେମାନଙ୍କ ଆବାଲ୍ୟ ନିର୍ଯ୍ୟାତନ, ଅସାଧାର ଧର୍ମପରାୟଣତା, କଠୋର ସାଧନା ଓ ପରିଣାମରେ ସିଦ୍ଧି ଇତ୍ୟାଦି ମହାଭାରତ ବର୍ଣ୍ଣିତ ସମସ୍ତ ବିଷୟ ତାଙ୍କ ମାନସ ନେତ୍ର ସମକ୍ଷରେ ଅଭିନୀତ ହେଉଥିଲା । ପୁଣି ବନ ମଧ୍ୟସ୍ଥ ଭୈଷଜ୍ୟ ଗୁଳ୍ମ ରାଶି ସନ୍ଦର୍ଶନ ବେଳେ ଋଷି ପ୍ରବର ଧନ୍ୱନ୍ତରୀ ପ୍ରଭୃତିଙ୍କ ଅଲୌକିକ ଗବେଷଣାଦି ବିଷୟ ଭାବି ବିସ୍ମିତ ହେଉଥିଲେ । ଚିକିତ୍ସା ଶାସ୍ତ୍ର ସଙ୍ଗେ ସଙ୍ଗେ ଜ୍ୟୋତିଷ୍ ଶାସ୍ତ୍ର, ଦର୍ଶନ ଶାସ୍ତ୍ର, ବେଦ, ବେଦାଙ୍ଗାଦିର ଜ୍ଞାନ ଗରିମାତ୍ମିକା ସ୍ମୃତି ଉଦିତ ହେଉଥିଲା । ଏହା ମାତଙ୍କର ବିଦ୍ୟାଦାୟିନୀ ବାଣୀ' ମୂର୍ତ୍ତି କି ? ପୁଣି କେତେବେଳେ ଧ୍ରୁବ, ପ୍ରହଲ୍ଲାଦଙ୍କର ଅଲୌକିକ ଭକ୍ତିର କଥା ଭାବି ମୋହିତ ହେଉଥିଲେ, କେତେବେଳେ ବା ସାବିତ୍ରୀ ସତ୍ୟବାନଙ୍କ ଅମୃତମୟୀ କଥା ସ୍ମରଣ କରି ଆତ୍ମବିସ୍ମୃତ ହେଉଥିଲେ । ସାବିତ୍ରୀଙ୍କ କଥା ସଙ୍ଗେ ସଙ୍ଗେ ପଦ୍ମିନୀଙ୍କ କଥା ମନେପଡି ତାଙ୍କୁ ବ୍ୟାକୁଳ କରୁଥିଲା । ତତ୍‌ପରେ ବପ୍ପା ରାଓ, ସମର ସିଂହ, ପୃଥ୍ୱୀରାଜ ପ୍ରଭୃତି ରାଜପୁତ୍ ବୀର-କେଶରୀମାନଙ୍କର ପ୍ରତିମୂର୍ତ୍ତିମାନ ତାଙ୍କ ମାନସ ପଟରେ ଏକେ ଏକେ ଉଦିତ ହୋଇ ଅପୂର୍ବ ଦୃଶ୍ୟ ପ୍ରଦର୍ଶନ କରୁଥିଲା । ଏହିପରି ଭାରତର ଅନନ୍ତ ଅତୀତର ଅନନ୍ତ ବୈଚିତ୍ର୍ୟମୟୀ ସ୍ମୃତି ତାଙ୍କ ମନରେ ଜାଗ୍ରତ ହୋଇ ତାଙ୍କୁ ଉନ୍ମତ୍ତ କରୁଥିଲା; ସେ ମାତୃଚରଣ ତଳେ କୋଟି କୋଟି ପ୍ରଣାମ କରୁଥିଲେ । କି ଉପାୟରେ ପ୍ରଥମତଃ ସ୍ୱକୀୟ ଜନ୍ମ ଭୂମି ମିବାର ଭୂମିକୁ ଉଦ୍ଧାର କରିବେ, ଏହି ଚିନ୍ତାରେ ସର୍ବଦା ନିମଗ୍ନ ହୋଇ ରହିଥିଲେ । ଚିନ୍ତା କାର୍ଯ୍ୟୋପାୟ ନିର୍ଦ୍ଦେଶ କରିଦେଲା, କାରଣ ବୀରପୁରୁଷ ପକ୍ଷରେ ଅତୀତ ସ୍ମୃତି ଚିନ୍ତାର ଜନନୀ ଓ

GPNanda Colln., Digitized by srujanika@gmail.com

ଚିନ୍ତା କାର୍ଯ୍ୟର ପ୍ରସୂତି । ହାମିର ମାତୃଦେବୀଙ୍କ ଶ୍ରୀଚରଣ ତଳେ ନିଜ ଜୀବନକୁ ଉତ୍ସର୍ଗ କରି ବୀରଧର୍ମ ଅନୁସରଣ ପୂର୍ବକ ଶତ୍ରୁ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ରାଜପୁତ କବି କହିଅଛନ୍ତି, ଅଜୟସିଂହଙ୍କ ସ୍ୱର୍ଗାରୋହଣ ପରେ ହାମିରଙ୍କ କୃପାଣ ସର୍ବଦା ନିଷ୍କାଷିତ ଥିଲା ଓ ସର୍ବଦା ତାଙ୍କ ହସ୍ତ ଅଳଙ୍କୃତ କରୁଥିବାର ଦେଖାଯାଉଥିଲା ।

ଏହି ସମୟରେ ମାଳଦେଓ ନାମକ ଜନୈକ ରାଜପୁତ ଆଲ୍ଲାଉଦ୍ଦିନଙ୍କ କର୍ତ୍ତୃକ ମିବାର ରାଜ୍ୟର ଶାସନକର୍ତ୍ତା ନିଯୁକ୍ତ ହୋଇ ସସୈନ୍ୟରେ ଚିତୋର ଦୁର୍ଗରେ ଅବସ୍ଥାନ କରୁଥିଲେ । ଏଲ୍‌ଫିନ୍‌ଷ୍ଟୋନ୍ ସାହେବ କହନ୍ତି, ଏ ଅଲ୍ଲାଙ୍କର ଜଣେ କରଦ ରାଜା ଥିଲେ । ହାମିର ସମତଳ ଭୂମିର ଶସ୍ୟକ୍ଷେତ୍ର-ମାନଙ୍କର ଧ୍ୱଂସ ସାଧନ କରିବାକୁ ଲାଗିଲେ, କାରଣ ଶତ୍ରୁକୁ ଖାଦ୍ୟ ସଂଗ୍ରହରୁ ବଞ୍ଚିତ କରିବାହିଁ ପ୍ରକୃତ ରଣପ୍ରାଣ୍ଡିତ୍ୟର ଲକ୍ଷଣ । ସେ ଶତ୍ରୁମାନଙ୍କୁ ଏପରି ଉଦ୍‌ବେଳିତ କରିବାକୁ ଲାଗିଲେ ଯେ, ସେମାନେ କେବଳ ସୁରକ୍ଷିତ ଦୁର୍ଗ ଛଡ଼ା ଅନ୍ୟ କୌଣସିଠାରେ ରହିପାରିଲେ ନାହିଁ । ହାମିରଙ୍କ ଆଜ୍ଞାବହ ମିବାର ପ୍ରଜାବର୍ଗ ସ୍ୱ ସ୍ୱ ଗୃହ ତ୍ୟାଗ କରି ପାର୍ବତ୍ୟ ସ୍ଥାନମାନଙ୍କରେ ଆଶ୍ରୟ ଗ୍ରହଣ କଲେ । ହାମିରଙ୍କ ଅନୁଚରମାନଙ୍କ ନିରନ୍ତର ଦୌରାତ୍ମ୍ୟରେ ରାଜମାର୍ଗମାନ ଦୁର୍ଗମ ହୋଇପଡ଼ିଲା ଓ କ୍ରମଶଃ ଗମନାଗମନ ରହିତ ହୋଇଗଲା । ପକ୍ଷାନ୍ତରେ ଅଲ୍ଲା ମଧ୍ୟ ନିଶ୍ଚିନ୍ତ ନଥିଲେ । ସେ ସୁବିଧା କ୍ରମେ ହାମିରଙ୍କୁ ଆକ୍ରମଣ କରିବାକୁ ଛାଡ଼ୁ ନଥିଲେ । କିନ୍ତୁ ରାଜପୁତମାନଙ୍କ ପରି ଯୁଦ୍ଧପ୍ରିୟ ସ୍ଥାନୀୟ ଲୋକଙ୍କୁ ନିବିଡ଼ ବନାବୃତ ପର୍ବତ ଶ୍ରେଣୀ ମଧ୍ୟରେ ପରାସ୍ତ କରିବା ଅଲ୍ଲାଙ୍କ ପରି ବିଦେଶୀୟ ଲୋକ ପକ୍ଷରେ ସହଜ ନଥିଲା; ଏଣୁ ଅଲ୍ଲା ବିଶେଷ କିଛି କ୍ଷତି କରିପାରୁ ନଥିଲେ । ମାତ୍ର ସମସ୍ତ ଦୁର୍ଗ ଅଲ୍ଲାଙ୍କ କରଗତ ଥିଲା । ହାମିର ଏହି ଦୁର୍ଗମାନ ଅଧିକାର କରିବାପାଇଁ ସର୍ବଦା ସଯତ୍ନ ଥିଲେ । ଏହିପରି କେତେ କାଳ ଅତିବାହିତ ହେଲା । ହାମିରଙ୍କର ପୁନଃ ପୁନଃ ଆକ୍ରମଣ ହେତୁରୁ ମିବାରର ଅବସ୍ଥା ଦିନକୁ ଦିନ ଶୋଚନୀୟ ହୋଇ ପଡ଼ୁଥିଲା । ଏହିପରି ସମୟରେ ଏକଦା ଅକସ୍ମାତ୍ ଚିତୋରର ହିନ୍ଦୁ ଶାସନ କର୍ତ୍ତା ମାଳଦେଓଙ୍କ ଠାରୁ ବିବାହ ପ୍ରସ୍ତାବ ସୂଚକ ଶ୍ରୀଫଳ ଆସିଲା । ଏହାଦେଖି ସମସ୍ତେ ବିସ୍ମିତ, କିଛି ବୁଝିପାରିଲେ ନାହିଁ । ହାମିରଙ୍କ ପରାମର୍ଶ ଦାତାମାନେ କହିଲେ, ଏହା ହୁଏତ ପ୍ରଲୋଭନ ଦେଖାଇ ରାଣାଙ୍କୁ ବନ୍ଦୀ କରିବାର ଉପାୟ, ନତୁବା ତାଙ୍କ ପ୍ରତି ଘୋର ଅପମାନର ଚିହ୍ନ; ଅତଏବ ତାହା ରଖିବାର ଯୋଗ୍ୟ ନୁହେଁ । କିନ୍ତୁ ହାମିର ମାତୃଭକ୍ତିରେ ଉନ୍ମତ୍ତ ଥିଲେ, ଜନ୍ମରୁ ଚିତୋର ଦୁର୍ଗ ଦେଖି ନଥିବାରୁ ତାହା ଦେଖିବା ପାଇଁ ଅତିଶୟ ବ୍ୟଗ୍ର, ଏଣୁ ସେ ଏତେ ଲାଭ କ୍ଷତିର ଗଣନା କରୁ ନଥିଲେ । ସେ ଧିର ଗମ୍ଭୀର ସ୍ୱରରେ ଆଦେଶ କଲେ, "ଶ୍ରୀଫଳ ରଖାଯାଉ, ବିପଦ ଅନେକ ଥାଉ ଭାବନା ନାହିଁ, ଏତଦ୍ୱାରା ଅନ୍ତତଃ ଥରେ ହେଲେ ମୋହର ପୂର୍ବ ପୁରୁଷମାନଙ୍କ ପଦଧୂଳି ଦ୍ୱାରା ପବିତ୍ରୀକୃତ ଗିରି-ଶୃଙ୍ଗୋପରି ଭ୍ରମଣ କରିବାର ସୁଯୋଗ ମିଳବ ତ ? ରାଜପୁତ ସର୍ବଦା ସକଳ ପ୍ରକାର ଭାଗ୍ୟ ବିପର୍ଯ୍ୟୟ ସକାଶେ ପ୍ରସ୍ତୁତ ଥିବା ଉଚିତ, କେତେବେଳେ ତାକୁ କ୍ଷତ ଭୂଷିତ କଳେବର ହୋଇ ସ୍ୱକୀୟ ବାସସ୍ଥାନ ତ୍ୟାଗ କରିବାକୁ ହେବ, କେତେବେଳେ ବା ତାକୁ ମୁକୁଟ ମଣ୍ଡିତ ମସ୍ତକରେ ରାଜ ସିଂହାସନରେ ଅଧିରୂଢ଼ ହେବାକୁ ହେବ ।" ରାଣାଙ୍କର ଇଦୃଶ ତେଜସ୍ୱିନୀବାଣୀ ଶ୍ରବଣ କରି ପରାମର୍ଶଦାତମାନେ ଅଗତ୍ୟା ସମ୍ମତ ହେଲେ । କିନ୍ତୁ ଏହି ଚୁକ୍ତି ହେଲା ଯେ

GPNanda Colln., Digitized by srujanika@gmail.com

କେବଳ ପାଞ୍ଚଶତ ଅଶ୍ୱାରୋହୀ ତାଙ୍କ ସଙ୍ଗରେ ଯାଇପାରିବେ । ରଣା ଚିତୋରର ନିକଟବର୍ତ୍ତୀ ହୁଅନ୍ତେ ଚୌହାନ ମାଲଦେଓଙ୍କ ପଞ୍ଚପୁତ୍ର ତାଙ୍କୁ ପାଛୋଟି ନେବାକୁ ଆସିଲେ । କିନ୍ତୁ ହାମିର ଦୁର୍ଗ ଦ୍ୱାରରେ ପ୍ରବିଷ୍ଟ ହୋଇ ଦେଖିଲେ ତୋରଣ † ବା ଉତ୍ସବ ଲକ୍ଷଣ କିଛି ଦେଖାଯାଉ ନାହିଁ । ହାମିର ଏହି ଅପମାନ ସହ୍ୟ କଲେ ଏବଂ ତାଙ୍କ ଜୀବନରେ ପ୍ରଥମ ଥର ଚିତୋର ପ୍ରାଚୀର ଉପରେ ଆରୋହଣ କଲେ । ରାଓ ମାଲଦେଓ, ତଦୀୟ ପୁତ୍ର ବନବୀର ଓ ଅନ୍ୟାନ୍ୟ ସର୍ଦ୍ଦାରମାନେ "ଯୁକ୍ତ କରେ" ତାଙ୍କ ପୂର୍ବ ପୁରୁଷମାନଙ୍କ ପୁରାତନ ଆଳୟରେ ହାମିରଙ୍କୁ ଅଭ୍ୟର୍ଥନା କଲେ । ବିବାହ ମଧ୍ୟ ଅଦ୍ଭୁତ ପ୍ରକାରରେ ସମାହିତ ହେଲା । କୌଣସି ପ୍ରକାରର ଉତ୍ସବ ବା ସମାରୋହ ବ୍ୟତିରେକେ କନ୍ୟା ଆନୀତ ହେଲେ ଓ ଉଭୟଙ୍କ ପରିଧେୟ ବସ୍ତ୍ରର ଅଗ୍ରଭାଗ ଓ ହସ୍ତ ଏକତ୍ର ବନ୍ଧନ କରାଯାଇ ସେମାନଙ୍କୁ ଛାଡ଼ି ଦିଆଗଲା । ଏହିପରି ଅପମାନରେ ହାମିରଙ୍କୁ ରାଗାନ୍ୱିତ ଦେଖି ପୁରୋହିତ ଧୈର୍ଯ୍ୟାବଲମ୍ବନ କରିବାକୁ ଉପଦେଶ ଦେଲେ । ତତ୍ପରେ ଉଭୟ ବରକନ୍ୟାଙ୍କ ପାଇଁ ନିୟୋଜିତ ପ୍ରକୋଷ୍ଠକୁ ଆସିଲେ । ଏହି କନ୍ୟାଟି ବିଧବା ଥିବାର ଶୁଣି ହାମିର ଯତ୍‌ପରୋନାସ୍ତି ଦୁଃଖିତ ହେଲେ । କିନ୍ତୁ ନବୋଢ଼ା କନ୍ୟାର ଅତିଶୟ ସୌଜନ୍ୟ ଓ ବିଶ୍ୱସ୍ତତାର ପୁନଃ ପୁନଃ ପ୍ରତିଜ୍ଞା ଦ୍ୱାରା ଏହି ଦୁଃଖ ଅଚିରେ ଅପନୀତ ହେଲା । ସେହି କନ୍ୟା ଜଣେ ଭଟ୍ଟି ବଂଶୀୟ (Bhatte tribe) ସର୍ଦ୍ଦାରଙ୍କୁ ବିବାହ କରିଥିଲେ । ଏହି ସର୍ଦ୍ଦାର ବିବାହର ଅଳ୍ପ ସମୟ ପରେ ଯୁଦ୍ଧରେ ପ୍ରାଣ ତ୍ୟାଗ କଲେ । ତେତେବେଳେ କନ୍ୟାର ବୟସ ଏଡେ ଅଳ୍ପ ଥିଲା ଯେ ସର୍ଦ୍ଦାରଙ୍କ ଆକୃତି ସୁଦ୍ଧା କନ୍ୟାର ସ୍ମରଣ ନଥିଲା । ପୁଣି କନ୍ୟା ଯେତେବେଳେ ଏହି ଅପମାନ ପ୍ରତିଶୋଧର ଓ ପରିଣାମରେ ଚିତୋର ଉଦ୍ଧାର ଉପାୟ ପତିଙ୍କୁ କହିଲେ, ତେତେବେଳେ ହାମିର ଆନନ୍ଦିତ ହେଲେ । ରାଜପୁତଙ୍କ ମଧ୍ୟରେ ଏପରି ଗୋଟିଏ ଚିରନ୍ତନ ପ୍ରଥା ଥିଲା, ଯେ ବରର ଯୌତୁକର ଗୋଟିଏ ଅଙ୍ଗ ସ୍ୱରୂପ ତାହାର ଗୋଟିଏ ବିଶେଷ ପ୍ରାର୍ଥନା ରକ୍ଷା କରିବା ଆବଶ୍ୟକ । ଚିତୋରର ଦେବାନୀ କର୍ମଚାରୀମାନଙ୍କ ମଧ୍ୟରେ ଜାଲ୍ ନାମକ ମେହେଟାବଂଶୀୟ ଜଣେ ବିଚକ୍ଷଣ ବ୍ୟକ୍ତି ଥିଲେ । ରଣାଙ୍କ ନବ ପତ୍ନୀ ଏହି କର୍ମଚାରୀଙ୍କୁ ମାଗିବା ସକାଶେ ହାମିରଙ୍କୁ ଶିଖାଇଲେ । ହାମିର ପ୍ରାର୍ଥନା ମାତ୍ରକେ ତାହାଙ୍କୁ ପାଇଲେ । ତତ୍‌ପରେ ପନ୍ଦର ଦିନ ମଧ୍ୟରେ ବୁଦ୍ଧିମତୀ ସହଧର୍ମିଣୀ ଓ ସେହି କର୍ମଚାରୀଙ୍କ ସମଭିବ୍ୟାହାରରେ କୈଲବାରକୁ ପ୍ରତ୍ୟାଗମନ କଲେ । ଯଥାସମୟରେ ହାମିରଙ୍କ କୌଟସିଂହ ନାମକ ଗୋଟିଏ ପୁତ୍ର ହେଲା । ଏହି ଉପଲକ୍ଷରେ ମାଲଦେଓ ହାମିରଙ୍କୁ ସମୁଦାୟ ପାର୍ବତ୍ୟ ଭୂମି ପ୍ରଦାନ କଲେ । କୌଟସିଂହଙ୍କୁ ଯେତେବେଳେ ଏକବର୍ଷ ହେଲା ତେତେବେଳେ ତାଙ୍କର କୌଣସି ପୀଡ଼ା ଉପସ୍ଥିତ ହେବାରୁ ଚିତୋରରେ ଥିବା କୌଣସି ଦେବତାଙ୍କର ପୂଜା କରିବାର ଆବଶ୍ୟକ ହେଲା । ରାଣୀ ଏଥି ନିମିତ୍ତ ତାଙ୍କୁ ଚିତୋରକୁ ନେବା ସକାଶେ ପିତାଙ୍କ ନିକଟକୁ ଲେଖିଲେ ତତ୍‌ପରେ ଚିତୋରକୁ ପ୍ରେରିତ

---

† ଏହି ତୋରଣ କଥା ଏକ କୌତୁକଜନକ ବ୍ୟାପାର । ବର ଅଶ୍ୱ ପୃଷ୍ଠରେ ଭଲ୍ଲ ଧାରଣ ପୂର୍ବକ ଏହି ତୋରଣ ଭାଙ୍ଗିବାକୁ ଯାଏ ଓ କନ୍ୟାର ସଖୀ ଜନମାନେ ପ୍ରାଚୀର ଆଢୁଆଳରେ ଥାଇ ତାହା ରକ୍ଷା କରନ୍ତି । ଏମାନଙ୍କ ପ୍ରଧାନ ଅସ୍ତ୍ର ପଳାଶପୁଷ୍ପରୁ ପ୍ରସ୍ତୁତ ଲାଲ ରଙ୍ଗର ଚୂର୍ଣ୍ଣ । ବିଶେଷ ବିବରଣ ଇଂରାଜୀ ରାଜସ୍ଥାନରେ ଦ୍ରଷ୍ଟବ୍ୟ ।

GPNanda Colln., Digitized by srujanika@gmail.com

ଏକ ରକ୍ଷି ଦଳ ଦ୍ୱାରା ରକ୍ଷିତ ହୋଇ ପୁତ୍ର ସମଭିବ୍ୟାହାରରେ ଚିତୋରକୁ ଗଲେ । ସେ କିଛିଦିନ ଚିତୋରରେ ଅବସ୍ଥାନ କଲେ । ଇତି ମଧ୍ୟରେ ମାଲ-ଦେଓ କୌଣସି ବିଦ୍ରୋହ ଦମନାର୍ଥେ ଚିତୋରରୁ ବାହାରିଗଲେ । ଏହି ସୁଯୋଗରେ ହାମିର ପତ୍ନୀ ରାଣୀ ପୂର୍ବୋକ୍ତ ମେହେତା କର୍ମଚାରୀଙ୍କ ଉପଦେଶ ମତେ ଅବଶିଷ୍ଟ ସୈନ୍ୟମାନଙ୍କୁ କରଗତ କରିନେଇ ହାମିରଙ୍କଠାକୁ ସମ୍ବାଦ ପଠାଇଲେ । ହାମିର ଅବିଳମ୍ବେ ଆସି ଘୋର ଯୁଦ୍ଧ ପରେ ଚିତୋର ଅଧିକାର କଲେ ଓ ପୈତୃକ ରାଜପ୍ରସାଦରୁ ସ୍ୱୀୟ ରାଜତ୍ୱ ଘୋଷଣା କଲେ ।

ମାଲଦେଓ ଏହି ସମ୍ବାଦ ପାଇଲେ, କିନ୍ତୁ ଚିତୋର ଆଡ଼କୁ ନଆସି ନିଜେ ସମ୍ବାଦ ଘେନି ତଦାନିନ୍ତନ ଖିଲିଜ୍ ସମ୍ରାଟ ମାହାମୁଦଙ୍କ ନିକଟକୁ ଗଲେ । ଇତି ମଧ୍ୟରେ ମିବାରର ସମୁଦାୟ ହିନ୍ଦୁ ପ୍ରଜାବର୍ଗ ପୁନର୍ବାର ହିନ୍ଦୁ ରାଜତ୍ୱର ଆଶା ଦେଖି ହାମିରଙ୍କ ଛତ୍ର ତଳରେ ଏକତ୍ରିତ ହେଲେ । ମାହାମୁଦ ଖିଲିଜ ସୈନ୍ୟରେ ଆସିଲେ କିନ୍ତୁ ଭ୍ରମବଶତଃ ପଥ ଭୁଲିବାରୁ ହାମିର ଅନାୟାସରେ ତାଙ୍କୁ ପରାସ୍ତ କରି ବନ୍ଦୀ କଲେ । ମାହାମୁଦ ବନ୍ଦୀ ହୋଇ ତିନିମାସ ଚିତୋରରେ ରହିଲେ । ତହୁଁରେ ଆଜମୀର, ରିଣ୍ଥୋର, ନାଗୋର ଇତ୍ୟାଦି ସ୍ଥାନମାନ ପରିତ୍ୟାଗ କଲା ପରେ ମୁକ୍ତି ପାଇଲେ * । ମାଲଦେଓଙ୍କ ପୁତ୍ର ଓ ହାମିରଙ୍କ ଶାଳକ ବନବୀର ହାମିରଙ୍କ ଅଧିନରେ କାର୍ଯ୍ୟ କରିବାକୁ ଅଭିଳାଷୀ ହେବାରୁ ହାମିର ତାଙ୍କ ପ୍ରାର୍ଥନା ରକ୍ଷା କରି ତାଙ୍କର ଭରଣ ପୋଷଣ ଓ ପଦ ମର୍ଯ୍ୟାଦା ରକ୍ଷା ପାଇଁ ତାଙ୍କୁ ନୀମଚ (Neamutch) ଜୀରଣ (Jeerun) ରତ୍ନପୁର (Ruttanpur)ଓ କୈରର (kairar) ଏହି ସ୍ଥାନମାନ ପ୍ରଦାନ କଲେ ଏବଂ ଏହି ଦାନକାଳରେ କହିଲେ,"ଖାଅ, କାର୍ଯ୍ୟକର ଓ ବିଶ୍ୱାସୀ ହୁଅ । ତୁମ୍ଭେ ଏବେ ତୁର୍କିର ଭୃତ୍ୟ ଥିଲ, କିନ୍ତୁ ବର୍ତ୍ତମାନ ତୁମ୍ଭ ଧର୍ମାବଲମ୍ବୀ ଜଣେ ହିନ୍ଦୁର ଭୃତ୍ୟ ହେଲ, କାରଣ ମୁଁ କେବଳ ମୋର ପୂର୍ବ ପୁରୁଷମାନଙ୍କ ଶୋଣିତ ନିଷିକ୍ତ ଦର୍ଗ, ମୋହର ପରମାରାଧ୍ୟ ଦେବତାଙ୍କର ଦାନ ଫେରାଇ ନେଇଅଛି । ଏହି ଦେବତା ଏଥିରେ ମୋତେ ରକ୍ଷା କରିବେ, ଆଉ ମୁଁ ମୋହର ପୂର୍ବ ପଦଧାରିଙ୍କ ପରି ନାରୀ ମୁଖସୌନ୍ଦର୍ଯ୍ୟ ମୋହରେ ଅନ୍ଧୀଭୂତ ହୋଇ ଏହି ଦାନକୁ ବିପଦ ଗ୍ରସ୍ତ କରିବି ନାହିଁ ।" §

ହାମିର ଆପଣା କଥା ଅନୁଯାୟୀ କାର୍ଯ୍ୟ କରିଥିଲେ । ସେ କଠୋର ଅଧ୍ୟବସାୟ ସହକାରେ ସ୍ୱକୀୟ ରାଜ୍ୟ ବିସ୍ତାର କରିବାକୁ ଓ ସ୍ୱୀୟ କ୍ଷମତା ଦୃଢ଼ୀଭୂତ କରିବାକୁ ଲାଗିଲେ । ସେହି ସମୟରେ ଭାରତ ବର୍ଷ ମଧ୍ୟରେ

---

* ଟଡ୍ ସାହେବ ଏହି ଫୁଟନୋଟ୍ ଦେଇ ଅଛନ୍ତି—

"Ferishta does not mention this conquest over the Khilji Emperor, but as Mewar recovered her wanted splendour in this reign, we cannot doubt the truth of the native annals"

§ Nor shall I endanger it by the worship of a fair face, as did my predecessor.

ସମ୍ଭବତଃ ଏଠାରେ ଭୀମ ସିଂହଙ୍କ ପ୍ରତି କିଞ୍ଚିତ୍ କଟାକ୍ଷ ଥାଇପାରେ

GPNanda Colln., Digitized by srujanika@gmail.com

ଏକମାତ୍ର ହିନ୍ଦୁ ନରପତି ଥିଲେ । ଆଧୁନିକ ମାରବାର ଓ ଜୟପୁରର ରଜା-ମାନଙ୍କର ପୂର୍ବ ପୁରୁଷମାନେ ଆପଣା ଆପଣା ସୈନ୍ୟ ସହ ଚିତୋର ରଜାଙ୍କର ଆଜ୍ଞାପାଳନ କରୁଥିଲେ ଏବଂ ବୁନ୍ଦି, ଗୋଆଲିଅର, ଚନ୍ଦେରି, ରାୟସୀନ, ସିକ୍ରୀ, କାଲ୍ପୀ ଓ ଅନ୍ୟାନ୍ୟ ସ୍ଥାନର ରଜାମାନେ ମଧ୍ୟ ସେହିପରି କରୁଥିଲେ ।

ତାତାରମାନଙ୍କ କର୍ତ୍ତୃକ ଭାରତାଧିକାର ପୂର୍ବେ ମିବାରର କ୍ଷମତା ବହୁଦୂର ବ୍ୟାପୀଥିଲା ସତ୍ୟ, କିନ୍ତୁ ହାମିରଙ୍କ କର୍ତ୍ତୃକ ଚିତୋର ଉଦ୍ଧାରର ପରବର୍ତ୍ତୀ ଦୁଇ ଶତାବ୍ଦି ମଧ୍ୟରେ ମିବାର କ୍ଷମତା ଯେପରି ଦୃଢ଼ୀଭୂତ ହୋଇଥିଲା, ତାହା ପୂର୍ବେ କେବେ ହୋଇନଥିଲା । ନାଗୋର, ସୌରାଷ୍ଟ୍ର ପ୍ରଭୃତି ସ୍ଥାନମାନଙ୍କରେ ସେମାନଙ୍କର ଯେଉଁ ଜୟ ଚିହ୍ନମାନ ବିଦ୍ୟମାନ ଅଛି । ସେମାନେ ସେହି ବୀର ପୁରୁଷମାନଙ୍କର ସୁଦୂର ବ୍ୟାପୀ ଦିଗ୍ବିଜୟର ଉଜ୍ଜ୍ୱଳ ସାକ୍ଷ୍ୟ ପ୍ରଦାନ କରୁଅଛି । ପୁଣି ଏହି କାଳ ମଧ୍ୟରେ ମିବାରର ଅଭ୍ୟନ୍ତରୀଣ ସୁଖ ସମୃଦ୍ଧି ଅତ୍ୟନ୍ତ ଉତ୍ତମ ଥିଲା ଦେବ ମନ୍ଦିର, ପୁଷ୍କରିଣୀ ଓ ଅନ୍ୟାନ୍ୟ ପୂର୍ତ୍ତ କାର୍ଯ୍ୟମାନ ତହିଁର ଉଜ୍ଜ୍ୱଳ ପ୍ରମାଣ । ଚିତୋରରେ ଯେଉଁ ଜୟ ସ୍ତମ୍ଭ ଅଦ୍ୟାପି ବିଦ୍ୟମାନ, ଦେଖିଲେ ଅବାକ୍ ହେବାକୁ ହୁଏ । ମିବାରର ରଣାମାନେ ନାନା ପ୍ରକାର ଶିଳ୍ପର ବିଶେଷତଃ ମନ୍ଦିର ନିର୍ମାଣାଦି କାରୁକାର୍ଯ୍ୟର ବିଶେଷ ଆଦର କରୁଥିଲେ । ଏଥିରେ ଅଜସ୍ର ଭାବରେ ଅର୍ଥବ୍ୟୟ ହୋଇ ଥିବାର ଅନୁମିତ ହୁଏ । ପ୍ରଧାନତଃ ଭୂମିର ଉତ୍ପନ୍ନ ରାଜସ୍ୱରୁ ସେମାନେ କିପରି ଏତେ ବ୍ୟୟସାଧ୍ୟ ପୂର୍ତ୍ତକାର୍ଯ୍ୟମାନ ସମ୍ପାଦନ କରି ତହିଁ ସଙ୍ଗେ ସଙ୍ଗେ ବୃହତ୍ ବୃହତ୍ ସେନା ରକ୍ଷା କରୁଥିଲେ ଓ ପ୍ରଜାବର୍ଗଙ୍କୁ ସମୃଦ୍ଧିଶାଳୀ ଓ ସନ୍ତୁଷ୍ଟ ରଖିଥିଲେ, ଏହା ଅବଶ୍ୟ ଆଶ୍ଚର୍ଯ୍ୟର ବିଷୟ, କାରଣ ପ୍ରଜାମାନେ ମଧ୍ୟ ମନ୍ଦିରାଦି ନିର୍ମାଣ କରୁଥିଲେ, ତହିଁର ଭଗ୍ନାବଶେଷ ରାଜସ୍ଥାନର ଅଗମ୍ୟ ଓ ପରିତ୍ୟକ୍ତ ସ୍ଥାନମାନଙ୍କରେ ଅଦ୍ୟାପି ଦୃଶ୍ୟମାନ । ଏହାର କାରଣ ବହୁକାଳ ବ୍ୟାପୀ ସୁଖ ସମୃଦ୍ଧି ଓ ଅଳ୍ପବ୍ୟୟ ସାଧ୍ୟ, ସଦୟ ଶାସନ ପ୍ରଣାଳୀ ।

ରଣା ହାମିର ସିଂହ ପରିପକ୍ୱ ବୟସରେ ୧୩୬୫ ଖ୍ରୀଷ୍ଟାବ୍ଦରେ ଇହଲୀଳା ସମ୍ବରଣ କଲେ । ସେ ଅଦ୍ୟାପି ମିବାର ରଜ୍ୟରେ ଜଣେ ସୁବିଜ୍ଞ ଓ ସୁସାହାସିକ ନୃପତି ବୋଲି ସୁପରିଚିତ ଓ ସମ୍ମାନିତ । ସେ ଭବିଷ୍ୟତ ବଂଶ ପାଇଁ ଗୋଟିଏ ସୁଦୃଢ଼ ଓ ସୁବିସ୍ତୃତ ରଜ୍ୟ ରଖି ଯାଇଥିଲେ ।

GPNanda Colln., Digitized by srujanika@gmail.com

# ରାଜପୁତ ରମଣୀ—ଦେବଳା ଦେବୀ

ମାନବ ଜୀବନରେ ନାରୀର ପ୍ରଭାବ ଅସୀମ—ତାହା କହି ଶେଷକରି ହେବ ନାହିଁ, ଚିନ୍ତା କରି ମଧ୍ୟ ଆୟତ୍ତ କରି ହେବନାହିଁ । ନାରୀ ଶକ୍ତି ନାନା ରୂପରେ ମାନବ ଜୀବନ ଉପରେ ପ୍ରଭାବ ବିସ୍ତାର କରନ୍ତି । ସେହି ଶକ୍ତି ମାତା ରୂପେ ମାନବକୁ ଗର୍ଭରେ ଧାରଣ କରନ୍ତି, ଜନ୍ମ ପ୍ରଦାନ କରନ୍ତି ଓ କେତେ କଷ୍ଟ ସହ୍ୟ କରି, କେତେ ରାତି ଉଜାଗର ରହି ଶୈଶବରେ ଲାଳନପାଳନ କରନ୍ତି; ପୁଣି ଯୌବନରେ ପତ୍ନୀ ରୂପରେ ସହଧର୍ମିଣୀ ହୁଅନ୍ତି ଓ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ପଦେ ପଦେ ମାନବର ଚିରସଙ୍ଗିନୀ ହୋଇ ରହନ୍ତି; ପୁଣି କନ୍ୟା ରୂପରେ ଆବିର୍ଭୂତ ହୋଇ କେତେ ପ୍ରବିତ୍ର ସୁଖ ପ୍ରଦାନ କରନ୍ତି ଓ କେତେ ଶିକ୍ଷା ମଧ୍ୟ ଦିଅନ୍ତି । ଏହିପରି ନାରୀ-ପ୍ରଭାବରେ ଇୟତ୍ତା କିଏ କରିବ ? ବାଗ୍‌ଦେବୀଙ୍କର ବରପୁତ୍ର ସ୍ୱର୍ଗୀୟ ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ ନାରୀ-ପ୍ରଭାବର ଗୋଟିଏ ବିଭାଗ ଦାମ୍ପତ୍ୟ-ପ୍ରଣୟ ସମ୍ବନ୍ଧରେ ଯାହା କହି ଯାଇଅଛନ୍ତି, ତାହା ପଢ଼ିଲେ କେଉଁ ପାଷାଣ ହୃଦୟ ବିଗଳିତ ନ ହେବ ? "ଉତ୍ତରଚରିତ" ନାମକ ନାଟକର ସମାଲୋଚନା ପ୍ରସଙ୍ଗରେ ଶ୍ରୀରାମଙ୍କ ଦ୍ୱାରା ସୀତା ବିସର୍ଜ୍ଜନକୁ ଲକ୍ଷ୍ୟ କରି ସେ ଲେଖିଅଛନ୍ତି, "ଯେ କେହି ଆପଣା ସ୍ତ୍ରୀଙ୍କୁ ବିସର୍ଜ୍ଜନ କରେ, ତାହାର ହୃଦୟୋଦ୍‌ଭେଦ ହୁଏ । ଯେ ବାଲ୍ୟ କାଳରେ କ୍ରୀଡ଼ାର ସଙ୍ଗିନୀ, କୈଶୋରରେ ଯେ ଜୀବନ ସୁଖର ପ୍ରଥମ ଶିକ୍ଷାଦାତ୍ରୀ ଯୌବନରେ ଯେ ସଂସାର-ସୌନ୍ଦର୍ଯ୍ୟର ପ୍ରତିମା, ବାର୍ଦ୍ଧକ୍ୟରେ ଯେ ଜୀବନା-ବଲମ୍ବନ—ପ୍ରୀତି କରୁ ବା ନକରୁ, କିଏ ସେ ସ୍ତ୍ରୀଙ୍କୁ ତ୍ୟାଗ କରିପାରେ ?

ଦେବଳା ଦେବୀଙ୍କର ଦୁଇ ପୁତ୍ର । ଦେବଳା ଦେବୀ ନିଜେ ବୀର ରମଣୀ, କିନ୍ତୁ ପୁତ୍ର ଦୁହେଁ ଠିକ୍ ତାହାର ବିପରୀତ । ସ୍ୱଦେଶ ରକ୍ଷା ପାଇଁ ଯୁଦ୍ଧବରଣ କରିବାକୁ ସେମାନେ ନାରାଜ । ଦେବଳା ଦେବୀ ଏହା ଜାଣିପାରି କହିଲେ, "ଈଶ୍ୱର ହେଲେ ମତେ ବନ୍ଧ୍ୟା କରିଥାନ୍ତେ ! ଯେଉଁ ପୁତ୍ରମାନେ ରାଜପୁତର ଚିରାନୁସୃତ ମାର୍ଗ ଏହିପରି ପରିତ୍ୟାଗ କରୁଅଛନ୍ତି ଓ ତାଙ୍କର ଜନ୍ମଭୂମିକୁ ବିପଦରୁ ଉଦ୍ଧାର କରିବାକୁ କୁଣ୍ଠିତ, ଏପରି ପୁତ୍ର ହେଲେ ମୋର ନିହୋଇଥାନ୍ତେ । ତତ୍‌ପରେ ଦୁଃଖବିଦୀର୍ଯ୍ୟମାଣ ହୃଦୟରେ ଆକାଶ ଆଡ଼କୁ ଅନାଇ ପୁନରାୟ କହିଲେ, "ହେ ପ୍ରଭୋ ଜଗନ୍ନାଥ ! ଏଥିପାଇଁକି ମତେ ଗର୍ଭ ଯନ୍ତ୍ରଣା ଓ ପ୍ରସବ ବେଦନାଦି ମାତୃକଷ୍ଟ ଭୋଗ କରାଇଥିଲ—ବଂଶର ଏହି କଳଙ୍କମାନଙ୍କୁ ଜନ୍ମ ଦେବା ସକାଶେ ? —ରେ ଅଯୋଗ୍ୟ ପୁତ୍ରଦ୍ୱୟ ! ଯୁଦ୍ଧର ନାମ ମାତ୍ର ଶୁଣିଲେ ପ୍ରକୃତ ରାଜପୁତର ହୃଦୟ ଆନନ୍ଦରେ ନାଚି ଉଠେ । କିନ୍ତୁରେ ନରାଧମମାନେ, ତୁମ୍ଭେମାନେ କଦାପି ଯଶୋରାଜଙ୍କ ସନ୍ତାନ ହୋଇ ନପାର—ନିଶ୍ଚୟ ଜାଣିଲି କୌଣସି ଦୁରାତ୍ମା କେବେ ଛଦ୍ମ ବେଶରେ ମୋର ଅଙ୍କଶାୟୀ ହୋଇଥିଲା । ତୁମ୍ଭେମାନେ ତାହାରି ଠାରୁ ସମ୍ଭୂତ ହୋଇଅଛ ।"

GPNanda Colln., Digitized by srujanika@gmail.com

ଭ୍ରାତୃଦ୍ୱୟ ମାତାଙ୍କର ଏହି ଅଗ୍ନିମୟ ତିରସ୍କାର ବାଣୀ ଶ୍ରବଣ କରି ଯଷ୍ଟ୍ୟାହତ ଫଣିରାଜ ତୁଲ୍ୟ ଗର୍ଜ୍ଜନ କରିଉଠି କହିଲେ, "ଯେତେବେଳେ ଆମ୍ଭେମାନେ ମହୋବାର ରକ୍ଷା କାର୍ଯ୍ୟରେ ପ୍ରାଣଦାନ କରିବୁଁ ଏବଂ କ୍ଷତ-ବିମଣ୍ଡିତ ଦେହରେ ଅଦ୍ଭୁତ କାର୍ଯ୍ୟ ସମ୍ପାଦନ କରି ଅମର ନାମ ଅର୍ଜ୍ଜନ କରିବୁଁ, ଯେତେବେଳେ ଆମ୍ଭମାନଙ୍କ ମସ୍ତକମାନ ରଣପ୍ରାଙ୍ଗଣରେ ଗଡ଼ି ଯାଉଥିବ, ଯେତେବେଳେ ଆମ୍ଭେମାନେ ଯୁଦ୍ଧରେ ଯୋଦ୍ଧାମାନଙ୍କୁ ଆଲିଙ୍ଗନ କରିବୁଁ ଏବଂ ସାହସୀ ପୂର୍ବପୁରୁଷମାନଙ୍କ ପଦାଙ୍କ ଅନୁସରଣ ପୂର୍ବକ ସେହି ଚୌହାନ ବୀରମାନଙ୍କ ସମକ୍ଷରେ ଉଭୟ ବଂଶର ରକ୍ତକୁ ସମୁଜ୍ଜ୍ୱଳ କରିବୁଁ, ସେତିକିବେଳେ ଆମ୍ଭମାନଙ୍କ ଜନନୀ ଆନନ୍ଦିତ ହେବେ । ଅତଏବ ଚାଲ, ଆଉ ବିଳମ୍ବ ସହ୍ୟ ହେଉନାହିଁ ।

ଭ୍ରାତୃଦ୍ୱୟ ତତ୍କ୍ଷଣାତ୍ ମହୋବାରକୁ ଫେରିଯିବା ସକାଶେ କନୌଜ-ରାଜଙ୍କ ଅନୁମତି ମାଗିବାକୁ ଚଳେ । ସଦାଶୟ କନୌଜରାଜ ଭ୍ରାତୃଦ୍ୱୟଙ୍କୁ ଓ ରାଜଦୂତଙ୍କୁ ଅନେକ ଧନରତ୍ନ ଦେଇ ଉକ୍ତ ଅନୁମତି ପ୍ରଦାନ କଲେ ଏବଂ ବିଦାୟ କାଳରେ ଏହି ଆଶୀର୍ବାଦ କଲେ "ରାଜପୁତମାନଙ୍କ ବିଶ୍ୱାସ ରକ୍ଷାକର ।"

ବାଟରେ ଯାଉଁ ଯାଉଁ ଅନେକ ଅଶୁଭ ଲକ୍ଷଣ ଦେଖାଗଲା । ଏହି ସବୁ ଦେଖି କନୌଜ ସେନାପତି କହିଲେ, "ସାହସୀ, ବିଶ୍ୱାସୀ ପୁରୁଷ ପକ୍ଷରେ ମୃତ୍ୟୁ ଦୁଃଖର କାରଣ ନୁହେଁ, ବରଂ ଆଦରର ବସ୍ତୁ । ରାଜପୁତର ପଥ ବହୁ ବିପଦଶଙ୍କୁଳ, ବନ୍ଧୁର ଓ କଣ୍ଟକମୟ, କିନ୍ତୁ ଏହି ପଥ ଯେବେ ତାହାକୁ ଯୁଦ୍ଧକୁ ଘେନିଯାଏ, ତେବେ ସେ ସେଥିକି ଭ୍ରୁକ୍ଷେପ କରେ ନାହିଁ ।" ଏହି ସବୁ କଥାରେ ଦେବଳା ଦେବୀଙ୍କର ଶିକ୍ଷା ଓ ଶାସନର ପ୍ରଭାବ ପରିସ୍ଫୁଟ । ଭ୍ରାତୃ-ଦ୍ୱୟ ମହୋବାରେ ପହଞ୍ଚିବା ପୂର୍ବରୁ ଏକ ସ୍ଥାନରେ ବିଶ୍ରାମ କରି "ଜାଫରାନ୍ ପୋଷାକ ପରିଧାନ କଲେ । ଏହା ରାଜପୁତ ଯୋଦ୍ଧା ପକ୍ଷରେ "ଶରଣ ନାସ୍ତି"ର ଚିହ୍ନ ଅଟେ ।

ଏଣେ ପୁରମଲ୍ଲ ଭ୍ରାତୃଦ୍ୱୟଙ୍କ ଆଗମନବାର୍ତ୍ତା ଶୁଣି ପରମ ଆନନ୍ଦିତ ହେଲେ ଓ ଆପଣା ଲୋକ ପଠାଇ ସେମାନଙ୍କୁ ମହୋବାରୁ ପାଛୋଟି ଆଣିବାକୁ ଅଗ୍ରସର ହେଲେ । ମାଲୁନ ଦେବୀ ମଧ୍ୟ ଦେବଳା ଦେବୀଙ୍କୁ ପାଛୋଟି ଆଣିବାକୁ ଗଲେ । ଦେବଳା ଦେବୀ ରାଜଦୂତ ସମଭିବ୍ୟାହାରରେ ରାଣୀଙ୍କୁ ଯଥାବିଧି ଅଭିବାଦନ କଲେ ଏବଂ ତାଙ୍କ ସଙ୍ଗରେ ରାଜଧାନୀକୁ ପ୍ରୟାଣ କଲେ । ବହୁ ଧନରତ୍ନ, ଉଜ୍ଜ୍ୱଳ ମଣିମାଣିକ, ଦେବଳା ଦେବୀଙ୍କୁ ଉପଢୌକନ ସ୍ୱରୂପ ପ୍ରଦତ୍ତ ହେଲା । ରାଣୀ ଆଲାଙ୍କୁ ଡକାଇ ତାଙ୍କ ମସ୍ତକୋପରି ସ୍ୱହସ୍ତ ସ୍ଥାପନ ପୂର୍ବକ ଆଶୀର୍ବାଦ କଲେ । ଆଲା ରାଣୀଙ୍କ ଆଗରେ ଜାନୁପାତପୂର୍ବକ ଶପଥ କଲେ, "ମୁଁ ଆଜିଠାରୁ ମୋର ମସ୍ତକ ମହୋବା ସକାଶେ ଉତ୍ସର୍ଗ କଲି । ତତ୍ପରେ ରାଣୀ ଗୋଟାଏ ମୌକ୍ତିକପରିପୂର୍ଣ୍ଣ ଅର୍ଘ୍ୟମାଳୀ ଧରି ତାହାଙ୍କୁ ବନ୍ଦାପନା କଲେ ଏବଂ ସେହି ମୁକ୍ତାଫଳଗୁଡ଼ିକ ଆଲାଙ୍କ ଅନୁଚରମାନଙ୍କ ମଧ୍ୟରେ ବିତରିତ ହେଲା । ଯେଉଁ ଦୂତ ଆଲା ଓ ଉଦିଳାଙ୍କୁ ଆଣିଥିଲେ, ସେ ପାଞ୍ଚୋଟି ଗ୍ରାମ ପୁରସ୍କାର ପାଇଲେ ।

ଏହି ବାର୍ତ୍ତା ଅବିଳମ୍ବେ ଚୌହାନ ଶିବିରରେ ପହଞ୍ଚିଲା । ଚୌହାନପତି ପୃଥ୍ୱୀରାଜ ପୁରମଲ୍ଲଙ୍କ ନିକଟକୁ ଖଣ୍ଡିଏ ଲେଖା ପଠାଇଲେ । ତହିଁରେ

GPNanda Colln., Digitized by srujanika@gmail.com

ଲେଖାଥିଲ; ଅସହାୟ କ୍ଷତବିକ୍ଷତ ସୈନ୍ୟମାନଙ୍କ ନିଷ୍ଠୁର ହତ୍ୟାକାଣ୍ଡ ଯୁଦ୍ଧର କାରଣ । ଅବସର ସମୟ ସାତଦିନ ଶେଷ ହେଲଣି । ବର୍ତ୍ତମାନ ଯେବେ ତୁମର ଯୁଦ୍ଧ କରିବାର ଇଚ୍ଛା ନ ଥାଏ, ତେବେ ଦିଲ୍ଲୀର ଅଧୀନତା ସ୍ୱୀକାର କର ଓ ମହୋବା ପରିତ୍ୟାଗ କର ।

ପୁରମଲ୍ଲ ଏହି ବିରୋଧ-ସନ୍ଦେଶ ଶ୍ରବଣ କରି ହତାଶ ହୋଇପଡ଼ିଲେ, କିନ୍ତୁ ଆପଣାର ଯୋଦ୍ଧୃବର୍ଗଙ୍କୁ ଆହ୍ୱାନ କରି ଚୌହାନ ଦୂତଙ୍କୁ ଉତ୍ତର ଦେଲେ—ଆଗାମୀ ମାସର ପ୍ରଥମ ଦିବସ ରବିବାର ଦିନ ମୁଁ ତାହାଙ୍କୁ ଯୁଦ୍ଧ-କ୍ଷେତ୍ରରେ ଭେଟିବି ।

ଶୁକ୍ରବାର ଦିନ ପୃଥ୍ୱୀରାଜ ଶଙ୍ଖନାଦ କଲେ । ତତ୍‌ପରେ ତିନିଥର ବାଦ୍ୟନାଦ ଦ୍ୱାରା ଅବସର ସମାପ୍ତ ହୋଇଥିବାର ଘୋଷଣା କରାଇଲେ ।

ଏଣେ ମହୋବାରେ ମହା କୋଳାହଳ ଉପସ୍ଥିତ । ଶନିବାର ଦିନ ପ୍ରାତଃକାଳରୁ ଏକ ମହତୀ ସଭା ଆହୂତ ହୋଇ ଶେଷ ବିଚାର ଲାଗିଅଛି । ଦେବଳା ଦେବୀ ଓ ମାଲୁନ ଦେବୀ ପର୍ଦ୍ଦା ଉଦ୍ଧାନରେ ଉପସ୍ଥିତ ଅଛନ୍ତି । ମାଲୁନ ଦେବୀ ଏହିପରି କାର୍ଯ୍ୟାରମ୍ଭ କଲେ—"ହେ ଅଲ୍ଲେମା, ଆମ୍ଭେମାନେ କିପରି ପୃଥ୍ୱୀରାଜଙ୍କ ବିରୁଦ୍ଧରେ ଜୟୀ ହୋଇପାରିବା ? ପରସ୍ତ ହେଲେ ମହୋବାର ସର୍ବନାଶ, କର ଦେଲେ ଲଜ୍ଜାଭର ଅସହ୍ୟ ହେବ ।" ଦେବଳା ଦେବୀ ଏକାଦିକ୍ରମେ ଉପସ୍ଥିତ ସମସ୍ତ ଦଳପତିଙ୍କ ଅଭିମତ ଶୁଣିବାକୁ ପରାମର୍ଶ ଦେଉଅଛନ୍ତି । ଆଲା ଏହିପରି କହୁଅଛନ୍ତି, "ହେ ମାତଃ, ପୁତ୍ରର କଥା ଶ୍ରବଣ କର । ଯେ ରାଜଭକ୍ତି ଶିରୋଧାର୍ଯ୍ୟ କରି ଆମୃବିସ୍ମୃତ ହୁଏ ଓ ରାଜାଙ୍କ ପାଇଁ ନିଜ ଜୀବନ ବିସର୍ଜନ କରେ, ତାହାର ଜନ୍ମ କେବଳ ପବିତ୍ର ଓ ସାର୍ଥକ, ମୋର ଚିନ୍ତା କେବଳ ପୁରମଲ୍ଲଙ୍କ ସକାଶେ । ଯେବେ ସେ (ରାଜପୁତ ଆପଣା ସ୍ତାର ନାମ କେବେ ଧରେ ନାହିଁ ।) ବଞ୍ଚିବ, ତେବେ ସେ ଆପଣାଙ୍କୁ ଜଣେ ନାରୀ ବା ପାର୍ବତୀ ପ୍ରଭୃତି ବୋଲି ପ୍ରମାଣିତ କରିବ । ସମ୍ମୁଖରେ ଯୋଦ୍ଧୃବର୍ଗ ଖଣ୍ଡବିଖଣ୍ଡ ହେବେ । ପିତୃପୁରୁଷମାନଙ୍କର ଯେଉଁ ଶୋଣିତ ଏହି ଧମନୀରେ ପ୍ରବାହିତ ହେଉଅଛି, ମୁଁ ତାହାର ଏପରି ସାର୍ଥକତା କରିବି, ଯେପରି ମୋର ଯଶ ଚିରକାଳ ରହିଥିବ । ହେ ରାଜନ୍, ମୋହର ଏହି ପୁତ୍ର ଇନ୍ଦଲକୁ ତୁମ ହସ୍ତରେ ସମର୍ପଣ କଲି ଓ ଦେବଳା ଦେବୀଙ୍କ ଯଶ ତୁମ୍ଭେ ରକ୍ଷା କରିବ ।"

ରାଣୀ ଏହିପରି କହିଲେ, "ଚୌହାନ ଯୋଦ୍ଧାମାନେ ଯେପରି ଭୟଙ୍କର ସେହିପରି ଅସଂଖ୍ୟ—ଅତଏବ କର ଦେଇ ମହୋବା ରକ୍ଷାକର ।" ଏହା ଶୁଣି ଉଦିଲ ଏକାବେଳକେ ଜ୍ୱଳି ଉଠିଲେ ଓ ରାଣୀଙ୍କୁ ଉତ୍ତର ଦେଲେ, "ଅରକ୍ଷିତ-ମାନଙ୍କୁ ହତ୍ୟା କଲାବେଳେ ତୁମ୍ଭେ ଏପରି ଭାବିଲ ନାହିଁ କାହିଁକି ? ସେତେ-ବେଳେ ତୁମେ ମୋ କଥା ଶୁଣିଲ ନାହିଁ—ସେମାନଙ୍କୁ କ୍ଷମା କରିବାକୁ ମୁଁ ତିନିଥର ପ୍ରାର୍ଥନା କଲି । ସେ ଯାହାହେଉ, ମୋ ପିଣ୍ଡରେ ପ୍ରାଣ ଥିବା ପର୍ଯ୍ୟନ୍ତ ମହୋବାର କୌଣସି ବିପଦ ନାହିଁ ।"

ଦେବଳା ଦେବୀ କହିଲେ, "ବେଶ କହିଛ ବାବୁ । ସ୍ୱପ୍ନରୁ ବିତାଡ଼ିତ କୃଷକର ଆର୍ତ୍ତନାଦ ଶୁଭୁଅଛି, ଆଉ ଆମ୍ଭେମାନେ ବିଚାର କରୁ କରୁ ଆମ୍ଭମାନଙ୍କ ଗ୍ରାମମାନ ଭସ୍ମୀଭୂତ ହେଉଅଛି ।" ପୁରମଲ୍ଲ କହିଲେ, "ଆଜି

GPNanda Colln., Digitized by srujanika@gmail.com

ଅନିବାରଟା, କାଲି ଆମ୍ଭେ ଶତ୍ରୁମାନଙ୍କୁ ଭେଟିବା ।" ଏହା ଶୁଣି ଆଳା ଅତିଶୟ କ୍ରୋଧରେ ରାଜାଙ୍କୁ ଅନାଇ କହିଲେ, ଯେତେବେଳେ ଆପଣାର ବିଧ୍ୱସ୍ତ ନଗରମାନଙ୍କରୁ ଧୂମରାଶି ଉତ୍ଥିତ ହେଉଅଛି, ଆପଣାର ଶସ୍ୟକ୍ଷେତ୍ର-ମାନ ବିନଷ୍ଟ ହେଉଅଛି, ତେତେବେଳେ ଯେ ନିଶ୍ଚେଷ୍ଟ ଭାବରେ ଅନାଇ ରହିପାରେ, ସେ କଦାପି ରାଜପୁତ ନୁହେଁ ।"

ଭୀରୁତା ଓ ନିଷ୍ଠୁରତା ଚିର ସହଚର । ଲୋକମାନେ ଯେତେ କହିଲେ, କୌଣସି ମତେ ପୁରମଲ୍ଲ ସାହସ ଧରିପାରିଲେ ନାହିଁ । ପୁରମଲ୍ଲ ରାଣୀଙ୍କ ନିକଟକୁ ଯାଇ ପୁନର୍ବାର ବିଳାପ କରିବାକୁ ଆରମ୍ଭ କଲେ । ରାଣୀ ତାଙ୍କର କାପୁରୁଷତା ଦେଖି ଯଥୋପଯୁକ୍ତ ଭର୍ତ୍ସନା କଲେ ଏବଂ ସୈନ୍ୟମାନଙ୍କୁ ଘେନି ଯୁଦ୍ଧକୁ ଯିବାକୁ ଆଦେଶ କଲେ । ବୀରମାନେ ନିଜ ନିଜ ପ୍ରିୟମାନଙ୍କୁ ଶେଷଥର ସକାଶେ ଆଲିଙ୍ଗନ କଲେ ଏବଂ ପ୍ରତ୍ୟୁଷ ହେବାରୁ ନିତ୍ୟକର୍ମ ସମାଦନ କଲେ । ବିନାଫୁର (ଅଳା) ନବଗ୍ରହଙ୍କୁ ଜଳ ଦେଲେ ଓ ଆପଣାର ଗୃହଦେବତାଙ୍କୁ ପୂଜା କରି ପୁନର୍ବାର ମହାବୀର (ହନୂମାନ) ଯନ୍ତ୍ର ଗଳାରେ ବନ୍ଧନ କଲେ । ତତ୍ପରେ ଆପଣାର ପୁତ୍ର ଇନ୍ଦଲ ଓ ଭ୍ରାତା ଉଦିଲଙ୍କୁ ଆହ୍ୱାନ କରି ଆଉ ଥରେ ଜଗଜ୍ଜନନୀଙ୍କ ନିକଟରେ ପ୍ରତିଜ୍ଞା କଲେ, "ଯେତେବେଳେ ଶତ୍ରୁକୁ ଭେଟିବି, ତେତେବେଳେ ଯଶୋରାଜଙ୍କ ନାମର ମହତ୍ତ୍ୱ ରକ୍ଷା କରିବି ଓ ଦେବଳା ଦେବୀଙ୍କର ଯେଉଁ ପବିତ୍ର ରକ୍ତ ଏହି ଧମନୀରେ ପ୍ରବାହିତ ହେଉଅଛି, ତାହାର ସାର୍ଥକତା କରିବି ।" ଉଦିଲ କହିଲେ, "ତୁମ୍ଭର ପ୍ରତିଜ୍ଞା ବୀରୋଚିତ ହୋଇଅଛି । ସେ ମୋ ଆଗରେ ପଡ଼ିଲେ ଆଉ ଫେରିଯିବ ନାହିଁ ।" ପରିଶେଷରେ ଦେବଳା ଦେବୀ କହିଲେ, "ହେ ପୁତ୍ରମାନେ, ମୁଁ ଏହିଠାରେ ବିଦାୟ ନେଉଅଛି, ତୁମ୍ଭେମାନେ ନିମକ୍‌ସଚ୍ଚା ହୁଅ; ତେବେ ତୁମ୍ଭେମାନେ ଆପଣାର ରାଜାଙ୍କ ସକାଶେ ନିଜ ନିଜ ମୁଣ୍ଡ ଦେବ, ତୁମ୍ଭେମାନେ ନିଶ୍ଚୟ ଦିବ୍ୟ ମୁକୁଟ ପ୍ରାପ୍ତ ହେବ ।"

ଆହା ! ଏପରି ବୀରମାତାଙ୍କର ପଟାନ୍ତର କାହିଁ ? ଏଥିରୁ ଏହାହିଁ ପ୍ରମାଣିତ ହେଉଅଛି, ସମାଜ ଉପରେ ଓ ସମାଜ ମଧ୍ୟରେ ନାରୀମାନଙ୍କ ପ୍ରଭାବ କେମନ୍ତ ମହୀୟାନ୍ । ତାଙ୍କର ସ୍ନେହୋତ୍ସାହପୂର୍ଣ୍ଣ କଠୋର ଶାସନ ମଧ୍ୟରେ ଏକ ସନାତନ ସଞ୍ଜୀବନ ମନ୍ତ୍ର ସେହି ମୁଖକମଳରୁ ନିଃସୃତ ହେଉଅଛି—"କର୍ତ୍ତବ୍ୟ ସାଧନ କର ।" ଯେଉଁ ମନ୍ତ୍ରରେ ବ୍ୟାସ ବଶିଷ୍ଠାଦି ଦୀକ୍ଷିତ ହୋଇ ପରମପଦ ଲାଭ କରି ଯାଇଛନ୍ତି' ଯେଉଁ ମନ୍ତ୍ର ବଳରେ ରାମଚନ୍ଦ୍ର, ଭୀଷ୍ମ; ଦ୍ରୋଣ, କର୍ଣ୍ଣ, ଅର୍ଜୁନାଦି ବୀରକେଶରୀମାନେ ଅସାଧ୍ୟ ସାଧନ କରି ଯାଇଅଛନ୍ତି, ଯେଉଁ ମନ୍ତ୍ର ବଳରେ ସୀତା, ସାବିତ୍ରୀ, ଦମୟନ୍ତୀ, ଦ୍ରୌପଦୀ ପ୍ରଭୃତି ମନସ୍ୱିନୀ ନାରୀକୁଳଲଳନାମାନେ ଅମରତ୍ୱ ଲାଭ କରି ଯାଇଅଛନ୍ତି, ସେହି ମନ୍ତ୍ର ସାଧନ କରିବାକୁ ବୀରପ୍ରସବିନୀ ଭାରତ ଜନନୀ ଆଜି ମଧ୍ୟ ଆଦେଶ କରୁଅଛନ୍ତି । ଏହି ମାତୃ ଆଦେଶ ପାଳନ କରି ଇଂରାଜ ଜାତି ଧନ୍ୟ ହୋଇଅଛି, ଜାପାନ ଜାତି ଅମର ଜୀବନ ଲାଭ କରିଅଛି । ଭାରତବାସୀ ଆଜି ସ୍ୱକୀୟ ଜାତୀୟ ଜୀବନର ସନ୍ଧି ସ୍ଥଳରେ ସେହି ପବିତ୍ର ମାତୃନିର୍ଦ୍ଦେଶ ପାଳନ କଲେ କାହିଁକି ଯେ ଜଗଜ୍ଜନନୀଙ୍କ ଆଶୀର୍ବାଦ ଲାଭ ନ କରିବେ, ଏଥିରେ କୌଣସି କାରଣ ନାହିଁ । ମହାବୀର ଟୋଗୋ ଓ ନେଲ୍‌ସନଙ୍କ କଥାରେ ପ୍ରବନ୍ଧର ଉପସଂହାର କରୁଯାଉ—

"India expects every Indian to do his duty."

GPNanda Colln., Digitized by srujanika@gmail.com

# ରାଜପୁତ ରମଣୀ—ଗାନୋରର ରାଣୀ

ରାଜସ୍ଥାନ ମଧ୍ୟରେ ଗାନୋର ନାମରେ ଗୋଟିଏ କ୍ଷୁଦ୍ର ରାଜ୍ୟ ଥିଲା । ତହିଁରେ ଜଣେ ରାଜପୁତ ରମଣୀ ରାଜତ୍ୱ କରୁଥିଲେ । ଏହି ବୀର ନାରୀଙ୍କ ଜୀବନର ଅନ୍ତିମ ଘଟନାଟିରୁ ତାଙ୍କ ପବିତ୍ର ଚରିତ୍ରର ଉଜ୍ଜ୍ୱଳ ପ୍ରମାଣ ମିଳି ପାରିବ । ସେହି ଘଟନାଟି ଏଠାରେ ବିବୃତ ହେଉଅଛି ।

ବର୍ତ୍ତମାନ ଭୋପାଳରେ ଯେଉଁ ମୁସଲମାନ ବଂଶ ରାଜପଣ କରୁଅଛନ୍ତି, ସେହି ବଂଶର ସ୍ଥାପୟିତା ଖାଁ ଉପାଧିଧାରୀ ଜନୈକ (ଏହି ମୁସଲମାନ-ମାନଙ୍କ ନାମ କଣ ଓ ଏହା କେଉଁ ସମୟର ଘଟନା, ବର୍ତ୍ତମାନ ତାହା ସ୍ଥିର କରିବାର ଉପାୟ ନାହିଁ ।) ମୁସଲମାନ ଉକ୍ତ ରାଣୀଙ୍କର ସମସାମୟିକ ଥିଲେ । ଏହି ଦୁର୍ମତି ଲୋଭପରବଶ ହୋଇ ଗାନୋର ରାଜ୍ୟ ଆକ୍ରମଣ କଲେ । ରାଣୀ ଅସୀମ ସାହସ ସହକାରେ ପାଞ୍ଚଗୋଟି ଦୁର୍ଗ ଶତ୍ରୁ ଆକ୍ରମଣରୁ ରକ୍ଷା କରି ପରିଶେଷରେ ନର୍ମଦା ତୀରବର୍ତ୍ତୀ ଆପଣାର ଦୁର୍ଗକୁ ନୌଯାନରେ ପ୍ରସ୍ଥାନ କଲେ । କିନ୍ତୁ ସେ ନୌକାରୁ ଓହ୍ଲାଇ ଦୁର୍ଗରେ ପ୍ରବେଶ କରିବା ମୁହୂର୍ତ୍ତରେ ଅନୁଧାବନକାରୀ ଶତ୍ରୁମାନେ ଉପସ୍ଥିତ ହୋଇ ଦୁର୍ଗ ଅବରୋଧ କଲେ । ରାଣୀଙ୍କର ଅଳ୍ପ ସଂଖ୍ୟକ ରକ୍ଷିବର୍ଗ ହତୋତ୍ସାହ ହୋଇପଡିଲେ ଏବଂ ଦୁର୍ଗଟି ଅବିଳମ୍ବେ ଶତ୍ରୁ କରତଳଗତ ହେଲା । ସେହି ଦୁଷ୍ଟବୁଦ୍ଧି ଖାଁ ଏହିପରି ରାଣୀଙ୍କର ରାଜ୍ୟ ସମସ୍ତ ହସ୍ତଗତ କଲା ପରେ ତାଙ୍କର ଅନୁପମ ରୂପଲାବଣ୍ୟ ସମସ୍ତ ପ୍ରତି ଲୋଲୁପିତ ହେଲା । କି ବିଷମ ସଙ୍କଟ । ଏଣେ ରାଜ୍ୟ ଗଲା, ତହିଁ ଉପରେ ପୁଣି ହିନ୍ଦୁ ନାରୀର ପ୍ରାଣାଧିକ ସତୀତ୍ୱ ସମ୍ପଦ ଆସି ଗଲାପରି । ରାଣୀ ପ୍ରାସାଦର ଉପର ମହଲାରେ, ଏଣେ ଖାଁ ତଳ ମହଲାରେ ଉତ୍କଣ୍ଠିତ ଚିତ୍ତରେ ରାଣୀଙ୍କ ଉତ୍ତରକୁ ରହିଁ ବସିଅଛି । ଏପରି ଅବସ୍ଥାରେ ପ୍ରତ୍ୟାଖ୍ୟାନ କଲେ ସେହି ଦୁର୍ମତି ତତ୍କ୍ଷଣାତ୍ ବଳାତ୍କାର କରିବ । ଏହି କଥାମାନ ଭାବି ରାଣୀ ସମ୍ମତି ସୂଚକ ଉତ୍ତର ପ୍ରେରଣ କଲେ ଏବଂ ତହିଁ ସଙ୍ଗେ ସଙ୍ଗେ ସବିଶେଷ ପ୍ରଶଂସାପୂର୍ବକ ଏହି କଥା କହି ପଠାଇଲେ, "ଖାଁ ସାହେବଙ୍କ ସାହସିକ କାର୍ଯ୍ୟ ଓ ଅନୁଧାବନରେ ଦୃଢ଼ ନିଷ୍ଠୟତା ଦେଖି ମୁଁ ଅତ୍ୟନ୍ତ ମୋହିତ ହୋଇଅଛି ଓ ସେ ତାଙ୍କର ସାହସିକତା ହେତୁରୁ ମୋହର ପାଣି-ଗ୍ରହଣ କରିବାର ଯୋଗ୍ୟ ପାତ୍ର ଅଟନ୍ତି । ଏହି ପ୍ରାସାଦର ଛାତ ଉପରେ ବିବାହୋତ୍ସବ ସମାହିତ ହେବ । ଅତଏବ ଖାଁ ସାହେବ ସେଥିପାଇଁ ପ୍ରସ୍ତୁତ ହୁଅନ୍ତୁ, ମୁଁ ମଧ୍ୟ ଏଣେ ପ୍ରସ୍ତୁତ ହେଉଅଛି । ମୋର ନିଜର ପଦବୀ ଓ ଖାଁ ସାହେବଙ୍କ ଉଚ୍ଚ ପଦବୀର ଅନୁରୂପ ଆୟୋଜନ କରିବାକୁ ହେବ ଓ ତଦନୁରୂପ ପରିଚ୍ଛଦରେ ସଜ୍ଜିତ ହେବାକୁ ହେବ । ଏଥିପାଇଁ ଦୁଇ ଘଣ୍ଟା ସମୟ ଆବଶ୍ୟକ । ପୁଣି ଖାଁ ସାହେବ କୌଣସି ପ୍ରକାରେ ମୋର ଆୟୋଜନାଦିରେ ହସ୍ତକ୍ଷେପ କରିବେ ନାହିଁ ।"

GPNanda Colln., Digitized by srujanika@gmail.com

ଖାଁ ସାହେବ ରାଣୀଙ୍କର ଏହି ସମ୍ମତି ସୂଚକ ଉତ୍ତର ପାଇ ଆନନ୍ଦରେ ଅଧୀର ହୋଇପଡ଼ିଲେ ଏବଂ ରାଣୀଙ୍କର ସମସ୍ତ କଥାରେ ସମ୍ମତ ହେଲେ । ନିଜେ ମଧ୍ୟ ଯଥାସାଧ୍ୟ ପ୍ରସ୍ତୁତ ହେବାକୁ ଲାଗିଲେ । ଏଣେ ରାଜପ୍ରସାଦରେ ନାନା ପ୍ରକାର ଆୟୋଜନ ହେବାକୁ ଲାଗିଲା । କିଛିକ୍ଷଣ ପୂର୍ବେ ଯେଉଁଠାରେ ଯୁଦ୍ଧର ଭୀଷଣ କୋଳାହଳ ମହାତଙ୍କ ଜାତ କରୁଥିଲା, ସେହିଠାରେ ପୁଣି ଉତ୍ସବର ଆନନ୍ଦ-ସଙ୍ଗୀତ ଜନମନ ହରଣ କରିବାକୁ ଲାଗିଲା । ରାଣୀ ଉପ-ଢୌକନସ୍ୱରୂପ ବୈବାହିକ ପରିଚ୍ଛଦ, ରତ୍ନହାର ଓ ବହୁମୂଲ୍ୟ ରତ୍ନଖଚିତ ଉଷ୍ଣୀଷ ଖାଁ ସାହେବଙ୍କଠାକୁ ପ୍ରେରଣପୂର୍ବକ ତାଙ୍କୁ ପ୍ରାସାଦ ଉପରକୁ ଆହ୍ୱାନ କରାଇଲେ । ଖାଁ ସାହେବ ସେହି ପରିଚ୍ଛଦାଦିରେ ସୁସଜ୍ଜିତ ହୋଇ ରାଣୀଙ୍କ ଆଦେଶ ପାଳନାର୍ଥେ ପ୍ରାସାଦୋପରି ଉପସ୍ଥିତ ହୁଅନ୍ତେ ରାଣୀଙ୍କର ସୌନ୍ଦର୍ଯ୍ୟ ସମ୍ପଦ ସମ୍ବନ୍ଧରେ ତାଙ୍କ ଚକ୍ଷୁ କର୍ଣ୍ଣର ବିବାଦ ମୀମାଂସିତ ହେବା ଦେଖିକି ଥାଉ, ବରଂ ବର୍ଦ୍ଧିତ ହେବାକୁ ଲାଗିଲା, କାରଣ ଚକ୍ଷୁ ଯାହା ଦେଖିଲା, କର୍ଣ୍ଣ ତାହାର ଶତାଂଶରୁ ଏକାଂଶ ମାତ୍ର ଶୁଣି ନଥିଲା । ରାଣୀ ତାଙ୍କୁ ବସିବାକୁ ଅନୁରୋଧ କଲେ । ଖାଁ ସାହେବ ଆସନ ପରିଗ୍ରହ ପୂର୍ବକ ନାନା ପ୍ରକାର ସମ୍ମୋହନ କଥୋପକଥନରେ ପ୍ରବୃତ୍ତ ହେଲେ ଏବଂ ରାଣୀଙ୍କ ସୌନ୍ଦର୍ଯ୍ୟ ସନ୍ଦର୍ଶନରେ ମତ୍ତ ଥିବାରୁ ପ୍ରତ୍ୟେକ ଘଣ୍ଟା ତାଙ୍କୁ ଗୋଟିଏ ଗୋଟିଏ ନିମେଷ ପରି ବୋଧ ହେଉଥିଲା । ଅଳ୍ପକ୍ଷଣପରେ କିନ୍ତୁ ଖାଁଙ୍କ ଶରୀର ଝାଉଁଳି ପଡ଼ିଲା—ସେ କହିଲେ, ମତେ ବଡ଼ ଗରମ ବୋଧ ହେଉଅଛି । ପଙ୍ଖା ଓ ପାଣି ଅଣାହେଲା, ମାତ୍ର ସେଥିରେ କିଛି ଫଳ ହେଲା ନାହିଁ । ପରିଶେଷରେ ଯେତେ-ବେଳେ ଖାଁ ସାହେବ ଆପଣାର ବରବେଶ ଛିଣ୍ଡାଇ ପକାଇବାକୁ ଲାଗିଲେ, ସେତେବେଳେ ରାଣୀ ତାଙ୍କୁ କହିଲେ, ଖାଁ, ଜାଣି ରଖ, ତୁମ୍ଭର ଶେଷ ମୁହୂର୍ତ୍ତ ଉପସ୍ଥିତ ହେଲାଣି । ଆମ୍ଭମାନଙ୍କ ବିବାହ ଓ ଅନ୍ତ୍ୟେଷ୍ଟିକ୍ରିୟା ଉଭୟ ଏକ କାଳରେ ସମାହିତ ହେବ । ତୁମ୍ଭେ ଯେଉଁ ପୋଷାକ ପିନ୍ଧିଅଛ, ତହିଁରେ ବିଷ ଦିଆଯାଇଅଛି, ମୋର ସତୀତ୍ୱ ରକ୍ଷାର ଏହାଛଡ଼ା ଆଉ ଦ୍ୱିତୀୟ ଉପାୟ ନଥିଲା ।'' ଯେତେବେଳେ ସମସ୍ତେ ଏହି ଅଦ୍ଭୁତ କଥା ଶୁଣି ଚମକିତ, ସେତେବେଳେ ରାଣୀ ପ୍ରାସାଦ ଶିଖରରୁ ଲମ୍ଫ ପ୍ରଦାନ ପୂର୍ବକ ଉଚ୍ଛ୍ୱସିତ ନର୍ମଦା ଜଳରେ ଝାସ ଦେଲେ । ଏଣେ ସେହି ନରପିଶାଚ ଖାଁ, ଅଭାବନୀୟ ମୃତ୍ୟୁ ଯନ୍ତ୍ରଣା ଭୋଗ କରି ଅଳ୍ପକ୍ଷଣ ମଧ୍ୟରେ ପଞ୍ଚତ୍ୱ ପ୍ରାପ୍ତ ହେଲା ।

ଟଡ୍ ସାହେବ ଏହି ରାଣୀଙ୍କ ଚରିତ୍ରକୁ ଇତିହାସ ପ୍ରସିଦ୍ଧ ରୋମିଓ ସତୀ ଲୁକ୍ରେସିୟାଙ୍କର ଗୋଟିଏ ଅନୁରୂପ ଚିତ୍ର ବୋଲି କହିଅଛନ୍ତି । ଏହା ଅନେକ ପରିମାଣରେ ଯଥାର୍ଥ । ଏ ଦୁହିଁଙ୍କ ମଧ୍ୟରେ ଅନେକ ସାମ୍ୟ ଅଛି । ଉଭୟେ ପତିପ୍ରାଣା ସାଧ୍ୱୀ ସତୀ । ଉଭୟେ ସତୀତ୍ୱ ଅନୁରୋଧରେ ପ୍ରାଣ ବିସର୍ଜନ କରିଥିଲେ । ଉଭୟଙ୍କ ଜୀବନର ଅନ୍ତିମ ଘଟନା ଅତୀବ ଦୁଃଖାବହ । କିନ୍ତୁ ଟିକିଏ ସୂକ୍ଷ୍ମ ଦୃଷ୍ଟିରେ ଦେଖିଲେ ଏହି ସବୁ ସାମ୍ୟ ମଧ୍ୟରେ କିଞ୍ଚିତ୍ ପାର୍ଥକ୍ୟ ଲକ୍ଷିତ ହୁଏ । ଏହି ପାର୍ଥକ୍ୟଟି ରାଜପୁତ ରମଣୀର ତଥା ହିନ୍ଦୁ ନାରୀର ବିଶେଷତ୍ୱ । ଜଣେ ସତୀତ୍ୱ ରତ୍ନ ହରାଇ,ଅପର ଜଣେ ସେ ଧନକୁ ରକ୍ଷାକରିବା ସଙ୍ଗେ ସଙ୍ଗେ ଆକ୍ରମଣକାରୀକୁ ସ୍ୱହସ୍ତରେ ସଂହାର କରି ମୃତ୍ୟୁକୁ ଆଶ୍ରୟ କରିଥିଲେ । ଲୁକ୍ରେସିୟା ଆପଣା ସତୀତ୍ୱ ରକ୍ଷାକରିବା ଲାଗି ଦସ୍ୟୁ ଟାର୍କୁଇନକୁ କରୁଣ କଣ୍ଠରେ ନାନା ପ୍ରକାର ପ୍ରାର୍ଥନା କରିବାକୁ ଲାଗିଲେ । କିନ୍ତୁ ମନୁଷ୍ୟ-ଠାରେ ଏପରି ପ୍ରାର୍ଥନା ବିଡ଼ମ୍ବନା ସିନା । ମନୁଷ୍ୟ ଯେତେବେଳେ ପାପବୁଦ୍ଧି

GPNanda Colln., Digitized by srujanika@gmail.com

ପ୍ରଣୋଦିତ ହୋଇ କୌଣସି ଦୁଷ୍କର୍ମ କରିବାକୁ ଯାଉଅଛି, ସେତେବେଳେ କେବଳ ପ୍ରାର୍ଥନା ଦ୍ୱାରା ତାହାକୁ ନିବୃତ୍ତ କରିବା ଅସମ୍ଭବ । ରୋମୀୟ ସତୀ ତରୁଣ ବୟସ୍କା ଲୁକ୍ରେସିୟା ଏହା ଜାଣି ନଥିଲେ । ପକ୍ଷାନ୍ତରରେ ଦେଖନ୍ତୁ କି ଅପୂର୍ବ ଦୃଶ୍ୟ । ରାଣୋରର ରକ୍ଷୀ ହିନ୍ଦୁ ରମଣୀ ! ସେ ଅନ୍ତଃପୁରନିବଦ୍ଧା ହେଲେ ହେଁ ତାହାର ବହିର୍ଜଗତର ଜ୍ଞାନ ସାମାନ୍ୟ ନୁହେଁ । ଏହା ଟଡ୍ ସାହେବ ନିଜେ ସ୍ୱୀକାର କରି କହିଅଛନ୍ତି—"Though invisible themselves, they can see". ପୁଣି ଉପସ୍ଥିତ ରମଣୀମଣି ଜଣେ ରାଜ୍ଞୀ । ଶାସନ କାର୍ଯ୍ୟ ଚଳାଇବା ନିମିତ୍ତ ବହିର୍ଜଗତର ସହିତ ତାଙ୍କର ମିଶିବାର ଯଥେଷ୍ଟ ସୁବିଧା ଥିଲା । ଏଣୁ ଏହି ସ୍ୱଭାବସିଦ୍ଧ ମାନବ ପ୍ରକୃତି ଜ୍ଞାନଟି ବିଶେଷ ଭାବରେ ମାର୍ଜିତ ଓ ଦୃଢ଼ୀଭୂତ ହୋଇଥିଲା । ଏଣୁ ସେ ଜାଣିଥିଲେ ଯେ ମନୁଷ୍ୟକୁ କେବଳ ପ୍ରାର୍ଥନା କରିବାଦ୍ୱାରା ଏ ସଂସାରରେ କିଛି ମହତ୍‌କାର୍ଯ୍ୟ ସାଧିତ ହୋଇନପାରେ, "ମାନୁଷୀ-ଅର୍ଚ୍ଚନା" ଦ୍ୱାରା ମନୁଷ୍ୟର ଆକାଂକ୍ଷା ପୂର୍ଣ୍ଣ ହୋଇ ନପାରେ । କେବଳ ଯେ ସେ ଏତିକି ଜାଣିଥିଲେ, ତାହା ନୁହେଁ । ପ୍ରାଣ ବିନିମୟରେ ମଧ୍ୟ ସତୀତ୍ୱ ରତ୍ନ ଅକ୍ଷୁର୍ଣ୍ଣ ରଖିବା ତାଙ୍କର କର୍ତ୍ତବ୍ୟ, ଏହା ମଧ୍ୟ ତାଙ୍କର ଜଣା ଥିଲା । ପୁଣି ତାଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ, ଯେବେ ସେ ତାହା ନିଜେ ରକ୍ଷା କରିବାରେ ଉପଯୋଗୀ ହେବେ, ସ୍ୱୟଂ ଭଗବାନ୍ ତାଙ୍କର ସହାୟ ହେବେ । ଇଂରେଜ କବି ମିଲ୍‌ଟନ୍ ମଧ୍ୟ ଏହି ସତ୍ୟଟି ଏହି ରୂପେ ଗାଇଅଛନ୍ତି—

'× × If virtue feeble were
Heaven itself would stoop to her,'

ଅର୍ଥାତ୍ ଧର୍ମ ପଥରେ ରହି ଆପଣାର କର୍ତ୍ତବ୍ୟ ଯଥାସାଧ୍ୟ ସାଧନ କରୁ କରୁ ଯେବେ ମନୁଷ୍ୟ ଶତଚେଷ୍ଟା ସତ୍ତ୍ୱେ ଆପଣାର କର୍ତ୍ତବ୍ୟ ପାଳନ କରିବାକୁ, ଆପଣାର ବିଧାତୃପ୍ରଦତ୍ତ ସ୍ୱତ୍ତ୍ୱ ରକ୍ଷା କରିବାକୁ ଅକ୍ଷମ ହେବ, ତେବେ ସ୍ୱୟଂ ପରମେଶ୍ୱର ଅଦୃଶ୍ୟ ଭାବରେ ମନୁଷ୍ୟକୁ ସବୁ ପ୍ରକାରରେ ସାହାଯ୍ୟ କରିବେ । ଯେଉଁ ସତୀ-କୋପାନଳରେ ସବଂଶ ରାବଣ ସମେତ ଲଙ୍କାପୁରୀ ଭସ୍ମୀଭୂତ, ଯେଉଁ ସତୀ-କୋପାନଳରେ କୌରବ ଗର୍ବ ଖର୍ବୀକୃତ ଓ ଯେଉଁ ସତୀ-କୋପାନଳରେ ଟାର୍କୁଇନ୍ ରାଜବଂଶ ବିତାଡ଼ିତ ଓ ବିଧ୍ୱସ୍ତ । ସେହି ସତୀ-କୋପାନଳରୁ ଯେ ପାପକୀଟ ଦୁଷ୍ଟବୁଦ୍ଧି ଖାଁ ବର୍ତ୍ତିଯାଆନ୍ତା, ଏହା ଅତି ଅସମ୍ଭବ କଥା ।

କିନ୍ତୁ ହାୟ ! ଆଜିକାଲି ଏ ପ୍ରଚଣ୍ଡ ଶକ୍ତି କୁଆଡେ ଗଲା ? ଆଧୁନିକ ଭାରତୀୟ, ବିଶେଷତଃ ଉତ୍କଳୀୟ ନାରୀମାନଙ୍କ ଦଶା ଅବଲୋକନ କଲେ କିଏ ବିଶ୍ୱାସ କରିବ ଯେ ଏହିମାନେ ଦିବ୍ୟଜ୍ଞାନାଲୋକିତ ଆର୍ଯ୍ୟ ଋଷିମସ୍ତିଷ୍କ-ସୃଷ୍ଟ ହିନ୍ଦୁ ସଭ୍ୟତାରୁ ପ୍ରସୂତ ! ଆଜିକାଲି ନାରୀମାନଙ୍କର କି ଦୁର୍ଗତି, କି ହୀନାବସ୍ଥା ହୋଇଅଛି, ତାହା ଅନୁଭବୀ ମାତ୍ରକେ ବୁଝିପାରୁଥିବେ । ଦେଶ ମଧ୍ୟରେ ଜାତୀୟ ଉନ୍ନତି, ଜାତୀୟ ଜୀବନର ହୁରି ଚାରିଆଡେ ପଡିଅଛି, କିନ୍ତୁ ଜାତୀୟ ଉନ୍ନତି ବା ଅବନତିର ପ୍ରଧାନ ହେତୁଭୂତ ନାରୀ ସମାଜ ପ୍ରତି ତ କାହାର ଦୃଷ୍ଟି ପଡ଼ିବାର ଦେଖାଯାଉ ନାହିଁ (ଏ ଉକ୍ତିଟି ଉତ୍କଳ ପକ୍ଷରେ ବିଶେଷ ଭାବରେ ପ୍ରଯୁଜ୍ୟ) । ବିଶେଷତଃ ଉତ୍କଳ ସମାଜର ନେତୃମଣ୍ଡଳୀ ଏ ବିଷୟରେ ବିଶେଷ ଭାବରେ ନିଶ୍ଚେଷ୍ଟ ପରି ବୋଧ ହେଉଛନ୍ତି ।

GPNanda Colln., Digitized by srujanika@gmail.com

ଆଧୁନିକ ଭାରତୀୟ ନାରୀ ଜାତିର ଦୁର୍ଗତିର ପ୍ରତିକାର କାର୍ଯ୍ୟ ଗୋଟିଏ ନାନା ଶାଖା ପ୍ରଶାଖା ସମନ୍ୱିତ ମହାସମସ୍ୟା । ସମାଜନୈତିକ, ଶିକ୍ଷାନୈତିକ ପ୍ରଭୃତି କେତେଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ସମସ୍ୟା ଏହି ମହାସମସ୍ୟାର ଅନ୍ତର୍ଗତ । ଲେଖିକାଙ୍କର କ୍ଷୁଦ୍ର ମତରେ ମନସ୍ତତ୍ତ୍ୱ ଘଟିତ ସମସ୍ୟାଟି (Psychological Problem) ଏହି ସମସ୍ୟାମାନଙ୍କ ମଧ୍ୟରେ ଗୋଟିଏ ହୋଇପାରେ । ସଂସାରର ସାର ପଦାର୍ଥ ମନୁଷ୍ୟ, ମନୁଷ୍ୟର ସାର ପଦାର୍ଥ ମନ—ଏହା ମହାଜନୋକ୍ତି । ଏହି ମନର ଗତି ଅନୁସାରେ ମାନବ ସମାଜର ସକଳ କାର୍ଯ୍ୟ ନିୟମିତ ହୁଏ । ବ୍ୟକ୍ତିଗତ ମନ ତଥା ଜାତୀୟ ମନ ଯଦି ସୁ ଅଙ୍କୁ ଗତି କରେ, ତେବେ ବ୍ୟକ୍ତି ବିଶେଷର ତଥା ଜାତିର ଜୀବନ ସୁପରିଚାଳିତ ହୋଇ ଉନ୍ନତି ପଥରେ ଅଗ୍ରସର ହୁଏ ଓ ଏଥିର ବିପରୀତ ଫଳ ହୁଏ । ଆଧୁନିକ ଭାରତୀୟ ବିଶେଷତଃ ଉତ୍କଳୀୟ ନାରୀ ଜାତିର ମନ ବିଶ୍ଳେଷଣ କରି ଦେଖିଲେ ଦେଖାଯିବ ଯେ ଏହା କେବଳ କେତୋଟି ତୁଚ୍ଛ ବ୍ୟାପାରରେ ସତତ ବ୍ୟାପୃତ । ଖାଇବା ପିଇବା, ଅଳଙ୍କାର ପିନ୍ଧିବା ପ୍ରଭୃତି କେତୋଟି ଚିନ୍ତା ନାରୀ ଜାତିର ମନୋରାଜ୍ୟକୁ ଅଧିକାର କରି ବସିଅଛି ।

ଏହାଛଡ଼ା ଆଉ କେତେଗୁଡ଼ିଏ ଭାବ ଦେଖିବାକୁ ମିଳୁଛି—ତନ୍ମଧ୍ୟରେ 'ଭିନେ ହବା' ଗୋଟିଏ । "ଯେତେ ଭାଇ ସେତେ ଘର, ଯେତେ କନ୍ୟା ସେତେ ବର" "ଭଡ଼ାରି କାହିଁ, ନା ମା ପେଟରେ" ଇତ୍ୟାଦି କେତେଗୁଡ଼ିଏ କଥା ସେମାନଙ୍କ ଜୀବନ-ଦର୍ଶନରେ (Philosophy of life) ଗୋଟିଏ ଗୋଟିଏ ପ୍ରଧାନ ଅଧ୍ୟାୟ । ଭାଇଠାରୁ ଭିନେ ହବା, ଶାଶୁ ଶଶୁରଙ୍କଠାରୁ ଭିନେ ହବା, ନିଜେ ନିଜେ ଗୋଟିଏ ଗୋଟିଏ ହାଣ୍ଡି କରି ନିଜ ପେଟକ ଫୁଟାଇ ଖାଇବା, ସୁଖ କରିବା । ଅହୋ । ସୁଖର କି ଉନ୍ନତ ଆଦର୍ଶ । ଏହାକୁ ଆତ୍ମଘାତୀ ଆଦର୍ଶ (Suicidal ideal) ନକହି ଆଉ କଣ କୁହାଯାଇପାରେ ? ଆପଣ ଟାଉନହଲରେ ଏକତାର ଜୟ ବଜ୍ରନିର୍ଘୋଷରେ ଗାନକରି ଗଲେ,ଗାନ ଶୁଣି ଗଲେ, କିନ୍ତୁ ତେଣେ ଆପଣଙ୍କ ଈଶାନକଣରେ ଅନୈକ୍ୟ ମୂର୍ତ୍ତି ଧାରଣ କରି ବିଦ୍ୟମାନ । କେତେକ ସ୍ଥଳରେ ସ୍ୱାର୍ଥ ତ୍ୟାଗର ଭୟଙ୍କର ଅପବ୍ୟବହାର ଦେଖାଯାଏ । ସେମାନେ ସ୍ତ୍ରୀ ଜନ୍ମଟାକୁ ନିତାନ୍ତ ଅସାର ମନେକରି ଆପଣା ଆପଣା ପ୍ରତି ଏପରି ଅବହେଳା ପ୍ରଦର୍ଶନ କରନ୍ତି ଯେ ତହିଁର ପରିଣାମ ଅତ୍ୟନ୍ତ ଶୋଚନୀୟ ହୋଇ ଉଠେ । ତା ଉପରେ ଝିଅମାନଙ୍କ ପାଠପଢ଼ା କହିଲେ ଦର୍ଶନ ଶାସ୍ତ୍ରରୁ ଅଧ୍ୟାୟଟିଏ ଶୁଣିବାକୁ ପଡ଼ିବ । କେତେକ ସ୍ଥଳରେ ନିରୀହ ବାଳିକାମାନେ କେତେ ନିର୍ଯ୍ୟାତନ ସହିଅଛନ୍ତି, ତାଡିଲା ପିଠାଖଡ଼ିକାରେ ଚିଆଁ ମଧ୍ୟ ପାଇଅଛନ୍ତି । (ଅଳ୍ପଦିନ ପୂର୍ବେ ଭୁବନେଶ୍ୱରଠାରେ ଏହିପରି ଗୋଟିଏ ଘଟନା ଘଟିଥିବା କଥା ସମ୍ବାଦପତ୍ରରେ ପ୍ରକାଶ ।) ଏହି ସବୁକୁ ପ୍ରତିରୋଧ କରିବାକୁ ଏବଂ ତହିଁର ପ୍ରତିବିଧାନ କରିବାକୁ କେହି ଚେଷ୍ଟିତ ହେଉଅଛନ୍ତି କି ?

ଏହି ପ୍ରତିବିଧାନ କିପରି କରିବାକୁ ହେବ, ଏଥିପାଇଁ କି କି ଉପାୟ ଅବଲମ୍ବନ କରିବାକୁ ହେବ, ଏହା ଅବଶ୍ୟ ଘୋର ଗବେଷଣା ଓ ଗଭୀର ବିଚାରଣା ଉପରେ ନିର୍ଭର କରେ ଓ ତଦନୁରୂପ ମାନସିକ ଶକ୍ତି ସାମର୍ଥ୍ୟ ମଧ୍ୟ ଆବଶ୍ୟକ । ଏହା ସମାଜର ନେତୃମଣ୍ଡଳୀଙ୍କର କର୍ତ୍ତବ୍ୟ । ଯେଉଁ ମାତୃଭକ୍ତି ଆଧୁନିକ ଭାରତବାସୀ ପୁରୁଷର ସକଳ କାର୍ଯ୍ୟ ନିୟମିତ କରୁଅଛି,

GPNanda Colln., Digitized by srujanika@gmail.com

ପୁରୁଷର ଅର୍ଦ୍ଧାଙ୍ଗ ନାରୀର ହୃଦୟ ମନ୍ଦିରରେ ସେହି ମାତୃଭୂମିର ମୂର୍ତ୍ତି ସ୍ଥାପନ କଲେ ଓ ମାତୃଭକ୍ତି ଜାଗ୍ରତ କରାଇ ପାରିଲେ ଏ ଆତ୍ମଘାତୀ ମୋହ ଓ ଭ୍ରାନ୍ତି ଅପସାରିତ ହେବାର ସମ୍ଭାବନା । ନାରୀ ଯେତେବେଳେ ମାତୃଭୂମିକୁ ଏହିପରି ସମ୍ବୋଧନ କରି ଶିଖିବ—

"ତୁହି ବିଦ୍ୟା, ତୁହି ଧର୍ମ,
ତୁହି ହୃଦ, ତୁହି ମର୍ମ,
ତ୍ୱଂହି ପ୍ରାଣାଃ ଶରୀରେ ।

ବାହୁରେ ତୁହି ମା ଶକ୍ତି,
ହୃଦୟେ ତୁହି ମା ଭକ୍ତି,
ତୋହରି ପ୍ରତିମା ଗଢ଼ୁ
ମନ୍ଦିରେ ମନ୍ଦିରେ ।

ତ୍ୱଂ ହି ଦୁର୍ଗା ଦଶ ପ୍ରହରଣଧାରିଣୀ,
କମଳା କମଳଦଳ—ବିହାରିଣୀ,
ବାଣୀ ବିଦ୍ୟାଦାୟିନୀ,
ନମାମି ତ୍ୱାଂ ।"

ସେତିକିବେଳେ ଏହା ତାହାର ଉନ୍ନତିର, ମୁକ୍ତିର ସୂତ୍ରପାତ ହେଲା ବୋଲିବାକୁ ହେବ । ଏହି ସଙ୍କୀର୍ଣ୍ଣ ମାତ୍ରାଳୟଟିକୁ, ଏହି କ୍ଷୁଦ୍ର ଜନ୍ମ ସ୍ଥାନଟିକୁ ଯଦି ବିଶ୍ୱାସ କରି ସୁବିସ୍ତୀର୍ଣ୍ଣ ଭାରତ ଭୂମିରେ ପରିଣତ କରାଯାଇ ପାରନ୍ତା, ଏହି ସଙ୍କୀର୍ଣ୍ଣ ମାତୃଭକ୍ତିଟିକୁ ଯେବେ ସୁପ୍ରଶସ୍ତ ମାତୃଭୂମି ଭକ୍ତିରେ ପରିଣତ କରାଯାଇ ପାରନ୍ତା, ତେବେ କେଡ଼େ ସୁଖର ବିଷୟ ହୁଅନ୍ତା । ଏହା କି ଅସମ୍ଭବ ? ଏହା କରିବାର କି ଉପାୟ ନାହିଁ ? ଅବଶ୍ୟ ଥିବ । ଆବିଷ୍କ୍ରିୟାର ଜନନୀ— ଆବଶ୍ୟକତା । ପ୍ରବଳ ଇଚ୍ଛା ଜାଗ୍ରତ ହେଲେ ପଥ ଆପେ ଉଦ୍‌ଘାଟିତ ହେବ । ଈଶ୍ୱର ଆମ୍ଭମାନଙ୍କୁ ନବଚେତନା ଓ ଶୁଭ ବୁଦ୍ଧି ପ୍ରଦାନ କରନ୍ତୁ ।

GPNanda Colln., Digitized by srujanika@gmail.com

# ରାଜା ଅଜିତ ସିଂହ

ରାଜା-ଯଶୋବନ୍ତ ସିଂହ ଯେତେବେଳେ କାବୁଲରେ ଇହଲୀଳା ସମ୍ବରଣ କଲେ, ସେତେବେଳେ ତାଙ୍କର ପତିପ୍ରାଣା ପତ୍ନୀ ପତିଙ୍କ ସହିତ ତାଙ୍କ ଚିତାନଳରେ ଆପଣାକୁ ଦଗ୍ଧ କରିବାକୁ କୃତସଂକଳ୍ପ ହେଲେ । କିନ୍ତୁ ତେତେ-ବେଳେ ସେ ଅନ୍ତଃସତ୍ତ୍ୱା ଥିବାରୁ ଆତ୍ମୀୟମାନେ ତାଙ୍କୁ ବଳପୂର୍ବକ ସେଥିରୁ କ୍ଷାନ୍ତ କରିଥିଲେ । ତତ୍‌ପରେ ଯଥା ସମୟରେ ସେ ଗୋଟିଏ ପୁତ୍ର ପ୍ରସବ କଲେ । (ଏଲ୍‌ଫିନ୍‌ଷ୍ଟୋନଙ୍କ ମତରେ ଯଶୋବନ୍ତ ଦୁଇଗୋଟି ଶିଶୁପୁତ୍ର ରଖି ଯାଇଥିଲେ ।) ଏହି ପୁତ୍ର ଅଜିତ ସିଂହ ନାମରେ ଖ୍ୟାତ ହୋଇଥିଲେ ।

ରାଣୀ ଚଳିବାକୁ କ୍ଷମ ହେଲା ମାତ୍ରକେ, କାବୁଲସ୍ଥ ରାଠୋର ସେନା ଶିଶୁ ରାଜପୁତ୍ର, ତାଙ୍କର ମାତା, ରାଜକନ୍ୟାବର୍ଗ ଓ ଭୂତପୂର୍ବ ରାଜାଙ୍କ ଅନୁଚର-ବର୍ଗ ସମଭିବ୍ୟାହାରରେ ସ୍ୱଦେଶାଭିମୁଖରେ ଯାତ୍ରାକଲେ । ଏଣେ ଆଓରଙ୍ଗ-ଜେବ, ଯଶୋବନ୍ତଙ୍କର ପୁଣି ଗୋଟିଏ ପୁତ୍ର ଜାତ ହେବା କଥା ଶୁଣି, କୃଷ୍ଣ ଜନ୍ମବାର୍ତ୍ତାରେ ପୁରାଣ ବର୍ଣ୍ଣିତ କ୍ରୁର କଂସାସୁରବତ୍ ଭୟରେ ଅସ୍ଥିର ହୋଇ ପଡିଲେ । ସେମାନେ ଦିଲ୍ଲୀର ସମୀପବର୍ତ୍ତୀ ହେଲା ମାତ୍ରକେ ଆଓରଙ୍ଗଜେବ ଶିଶୁ ରାଜପୁତ୍ରଙ୍କୁ ତାଙ୍କର ତତ୍ତ୍ୱାବଧାନରେ ଛାଡିଦେବାକୁ ସେମାନଙ୍କୁ ଆଦେଶ କଲେ, ପୁଣି ଏହି ପ୍ରଲୋଭନ ମଧ୍ୟ ଦେଖାଇଲେ ଯେ, ସେମାନେ ରାଜପୁତ୍ରଙ୍କୁ ସମର୍ପଣ କଲେ ସେ ମାରବାର ରାଜ୍ୟକୁ ସେମାନଙ୍କ ମଧ୍ୟରେ ବଣ୍ଟନ କରିଦେବେ । ପ୍ରଭୁଭକ୍ତ ରାଜପୁତମାନେ ଉତ୍ତର କଲେ, "Our country is with our sinewy, and these can defend both it and our Lord—" "କ୍ଷତ୍ରିୟର ଦେଶ ତାହାର ବାହୁବଳରେ, ସେ ତଦ୍ୱାରା ସ୍ୱଦେଶ ଓ ସ୍ୱକୀୟ ପ୍ରଭୁଙ୍କୁ ରକ୍ଷା କରିପାରେ ।" ଏହା ଶୁଣି ମୋଗଲ ସୈନ୍ୟମାନେ ନିମିଷ ମଧ୍ୟରେ ରାଜପୁତ ଶିବିର ପରିବେଷ୍ଟନ କଲେ ।

ବୀରହୃଦୟ ରାଜପୁତମାନେ ଆଓରଙ୍ଗଜେବଙ୍କର ଉଦ୍ଦଣ୍ଡ ପୈଶାଚିକ ବ୍ୟବହାରରେ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ତତ୍‌କ୍ଷଣାତ୍ ଆପଣାର କର୍ତ୍ତବ୍ୟ ଅବଧାରଣ କଲେ । ପ୍ରଥମତଃ, ଯେକୌଣସି ପ୍ରକାରେ ରାଜପୁତ୍ରଙ୍କୁ ରକ୍ଷା କରିବାକୁ ହେବ, ଦ୍ୱିତୀୟତଃ, ଆପଣାର ଓ ସ୍ୱର୍ଗଗତ ପ୍ରଭୁ ଯଶୋବନ୍ତଙ୍କର ସମ୍ମାନ ଅକ୍ଷୁର୍ଣ୍ଣ ରଖିବାକୁ ହେବ । ସେମାନେ ଏହି ଶେଷୋକ୍ତ କର୍ତ୍ତବ୍ୟଟି ଯେପରି ଉପାୟରେ ସମ୍ପାଦନ କରିଥିଲେ, ତାହା ଅତୀବ ଭୟଙ୍କର ଏବଂ ତାହା ଭାବିଲେ ହୃଦୟ ବିସ୍ମୟରେ ସ୍ତବ୍ଧ ହୋଇଯାଏ । ଅଳ୍ପବୟସ୍କା କନ୍ୟାବର୍ଗ ସମେତ ଯଶୋବନ୍ତଙ୍କ ଅନ୍ତଃପୁରବାସିନୀ ନାରୀବୃନ୍ଦଙ୍କୁ ଏବଂ ନିଜ ନିଜ ସ୍ତ୍ରୀ ଓ କନ୍ୟାମାନଙ୍କୁ ବାରୁଦପୂର୍ଣ୍ଣ ଏକ ପ୍ରକୋଷ୍ଠ ମଧ୍ୟରେ ଭର୍ତ୍ତି କରି ତହିଁରେ ଅଗ୍ନି

GPNanda Colln., Digitized by srujanika@gmail.com

ସଂଯୋଗ କରିଦେଲେ—କ୍ଷଣକ ମଧ୍ୟରେ ସମସ୍ତ ଶେଷ ହୋଇଗଲା । ଆତ୍ମ-ସମ୍ମାନ—ପାଠରେ ଏହି ଅଦ୍‌ଭୁତ ବଳିଦାନାନ୍ତେ ମୁଷ୍ଟିମେୟ ରାଠୋର ବୀର ଅଗଣିତ ମୋଗଲ ସୈନ୍ୟ ସହ ବିଷମ ସଂଗ୍ରାମରେ ପ୍ରବୃତ୍ତ ହେଲେ । ଇତିହାସ ପ୍ରସିଦ୍ଧ ଥର୍ମପିଲିର ମର୍ମସ୍ପର୍ଶୀ ଦୃଶ୍ୟ ପୁନର୍ବାର ଦିଲ୍ଲୀର ରାଜମାର୍ଗରେ ଅଭିନୀତ ହେବାକୁ ଲାଗିଲା । "ଭଲ୍ଲହସ୍ତ, କୃତାନ୍ତରୂପୀ ରାଠୋର ବୀରମାନେ ପ୍ରତିପକ୍ଷ-ମାନଙ୍କୁ ପ୍ରଚଣ୍ଡ ବେଗରେ ଆକ୍ରମଣ କରିବାକୁ ଲାଗିଲେ । ଖଡ୍‌ଗ ଓ ଫଳକର ଝନତ୍‌କାର ଶବ୍ଦ ଶ୍ରୁତିଗୋଚର ହେଲା । ରକ୍ତନଦୀ ତରଙ୍ଗାୟିତ ହେବାକୁ ଲାଗିଲା । ଶଙ୍କର ଆପଣାର ମୁଣ୍ଡମାଳା ପୂର୍ଣ୍ଣ କଲେ । x x x x

ମାରବାରର ପ୍ରତ୍ୟେକ ବଂଶ ଓ ପରିବାର ଏହି ଯୁଦ୍ଧରେ ସ୍ୱ ସ୍ୱ କର୍ତ୍ତବ୍ୟ ସମ୍ପାଦନ କରିଥିଲେ ଏବଂ ଦୁର୍ଗାଦାସ ଶତ୍ରୁମାନଙ୍କୁ ନିକ୍ଷେପିତ କରି ଆପଣାର ସମ୍ମାନ ରକ୍ଷା କରିଥିଲେ ।" ଏହି ଅଦ୍‌ଭୁତ ଘଟନା ଖ୍ରୀ: ୧୬୮୦ସାଲ (ଟଡ୍ ସାହେବ ପୂର୍ବେ ଲେଖିଅଛନ୍ତି ଯେ ଯଶୋବନ୍ତଙ୍କ ମୃତ୍ୟୁ ୧୬୮୧ ସାଲରେ ଘଟିଥିଲା । ଅଜିତଙ୍କ ଜନ୍ମ ଅବଶ୍ୟ ଯଶୋବନ୍ତଙ୍କ ମୃତ୍ୟୁ ପରେ । ଅତଏବ ଏଠାରେ ତାରିଖ ବିଷୟରେ କିଞ୍ଚିତ୍ ଗୋଳମାଳ ହୋଇଥିବାର ବୋଧ ହେଉଅଛି ।) ଶ୍ରାବଣ ମାସର ସପ୍ତମ ଦିବସେ ସଙ୍ଘଟିତ ହୋଇଥିଲା ଏବଂ ଏହି ଦିବସ ମାରୱାରର ପଞ୍ଜିକାରେ ଗୋଟିଏ ପବିତ୍ର ଦିବସ ଅଟେ ।

ମନୁଷ୍ୟର ପ୍ରକୃତି ଏହି ଯେ ସେ ପ୍ରିୟତର ବସ୍ତୁ ନିମିତ୍ତ ଅଳ୍ପପ୍ରିୟ ବସ୍ତୁକୁ ବିସର୍ଜନ କରିଥାଏ । ଅତଏବ ଏହି ରାଜପୁତମାନେ ଆପଣାର ଐହିକ ଜୀବନ ଅପେକ୍ଷା ଅନ୍ୟ କିଛି ପ୍ରିୟତର ବସ୍ତୁ ଦେଖିଥିବେ, ଯାହାଲାଗି ସେମାନେ ଈଦୃଶ ତ୍ୟାଗ ସ୍ୱୀକାର କରିବାକୁ ଲେଶମାତ୍ର ପଶ୍ଚାତ୍‌ପଦ ହେଉ ନଥିଲେ । ଟଡ ସାହେବ ଲେଖିଅଛନ୍ତି—

"This sacrifice (of females in the house of gun-powder) being accomplished their sole thought was to secure a rich in that immortal temple which the Rajput bard, as well as the great minstrel of the west, 'people with youths who died, to be by poets song.' For this the Rajput's anxiety has in all ages been so great as often to defeat the purpose of revenge, his object being to die gloriously rather tham to inflict death assured that his name would never perish, but, preserved in immortal rhyme by the bard, would serve as the incentive to similar deeds,"—ବାରୁଦପୂର୍ଣ୍ଣ ଗୃହରେ ରମଣୀମାନଙ୍କର ଈଦୃଶ ଅଦ୍‌ଭୁତ ବଳିଦାନାନ୍ତେ କବିବୃନ୍ଦ କର୍ତ୍ତୃକ ଗୀୟମାନ, ଅତୀତ ବୀର-ସମାଜାଧ୍ୟୁଷିତ ସେହି ଅମର ମନ୍ଦିରରେ କିପରି ଗୋଟିଏ ସ୍ଥାନ ଲାଭ କରି ପାରିବେ, ଏହି ଏକମାତ୍ର ଚିନ୍ତା ଦ୍ୱାରା ପ୍ରତ୍ୟେକ ରାଜପୁତ ବୀର ସେହି ସମୟରେ ପ୍ରଣୋଦିତ ହୋଇଥିଲେ । ଏଥି ନିମିତ୍ତ ରାଜପୁତର ଉତ୍କଣ୍ଠା ସର୍ବ-ଯୁଗରେ ଏତେ ଅଧିକ ଥିଲା ଯେ, ଅନ୍ୟର ପ୍ରାଣନାଶ କରିବା ଅପେକ୍ଷା ସ୍ୱୀୟ କର୍ତ୍ତବ୍ୟ-ପାଠରେ ନିଜ ଜୀବନକୁ ଗୌରବାନ୍ୱିତ ଭାବରେ ବଳିଦାନ କରିବାକୁ

GPNanda Colln., Digitized by srujanika@gmail.com

ସେ ଅଧିକ ଶ୍ରେୟସ୍କର ଜ୍ଞାନ କରୁଥିଲା, କାରଣ ତାହାର ଏହି ଦୃଢ଼ ବିଶ୍ୱାସ ଥିଲା ଯେ ତାହାର ନାମ କଦାପି ଲୁପ୍ତ ହେବ ନାହିଁ, କିନ୍ତୁ 'ଅମର-ସଙ୍ଗୀତରେ' ସୁରକ୍ଷିତ ହୋଇ ଭବିଷ୍ୟତ୍ ବଂଶକୁ ତାଦୃଶ କର୍ତ୍ତବ୍ୟପରାୟଣ କରିବ । ଏହିଠାରେ ଜାତୀୟ ଜୀବନର ଅକ୍ଷୟ ବୀଜ ନିହିତ । ଶଂସିତ ଅମର ମନ୍ଦିରଟି ଅନନ୍ତ ଅତୀତ ଓ ଅନନ୍ତ ଭବିଷ୍ୟତ୍-ଉଭୟ କାଳବ୍ୟାପୀ ପବିତ୍ର ଜାତୀୟ ଜୀବନ-ମନ୍ଦିର ଛଡ଼ା ଆଉ କିଛି ନୁହେଁ । ବ୍ୟକ୍ତିଗତ ଜୀବନ ଏହି ଅନନ୍ତ ଅଖଣ୍ଡ ଜୀବନର ପୁଷ୍ଟୋସାଧନ ଓ ଉନ୍ନତି ବିଧାନର ଉପାୟ ମାତ୍ର—ଏହି ସତ୍ୟ ରାଜପୁତ ତାହାର ନିଜ ପ୍ରଣାଳୀରେ ହୃଦୟଙ୍ଗମ କରି ପାରୁଥିଲା ଏବଂ ତାହାର ହୃଦୟତନ୍ତ୍ରୀ ଅତୀତ ଓ ଭବିଷ୍ୟତ୍ ସହିତ ଦୃଢ଼ ଭାବରେ ଅନୁସ୍ୟୂତ ଥିଲା । ଏହି ଧର୍ମଭାବ ଦ୍ୱାରା ସର୍ବଦା ଅନୁପ୍ରାଣିତ ଥିବାରୁ ସେ ନିଜ ନିଜ ଜୀବନ ବିନିମୟରେ ଏହି ଅନନ୍ତ ଜୀବନର ପବିତ୍ରତା ରକ୍ଷା କରିବାକୁ ଏତେ ତତ୍ପର ଥାଇ ଅନନ୍ୟ ସାଧାରଣ ଅସୀମସାହସିକ କାର୍ଯ୍ୟମାନ ସାଧନ କରିବାକୁ ସମର୍ଥ ହେଉଥିଲା । କିନ୍ତୁ ଦୁଃଖର ବିଷୟ ଯେ ତଦାନୀନ୍ତନ ସାମାଜିକ, ରାଜନୈତିକ, ଶିକ୍ଷାନୈତିକ ଓ ଅନ୍ୟାନ୍ୟ ପ୍ରତିକୂଳ ଅବସ୍ଥା ହେତୁରୁ ରାଜପୁତ ଚରିତ୍ର ଦିନକୁ-ଦିନ ଅଧୋଗତି ଆଡ଼କୁ ଧାବିତ ହେବାକୁ ଲାଗିଲା ଏବଂ ଏହି ଜାତୀୟଜୀବନ-ବୀଜର ଅଙ୍କୁରୋଦ୍‌ଗମ, ପରିପାଳନ ଓ ପରିବର୍ଦ୍ଧନ ପକ୍ଷରେ ଦୁରତିକ୍ରମଣୀୟ ପ୍ରତିବନ୍ଧକ ସଂଘଟିତ ହେଲା ।

ଏହି ଭୟଙ୍କର ସଂଗ୍ରାମ ମଧ୍ୟରେ ଶିଶୁ ରାଜପୁତ୍ର ଯେଉଁ ଉପାୟରେ ରକ୍ଷିତ ହୋଇଥିଲେ, ତାହା ଅତୀବ ଆଶ୍ଚର୍ଯ୍ୟଜନକ ଓ ହୃଦୟସ୍ପର୍ଶୀ । ଯେପରି କେହି ସନ୍ଦେହ କରି ନ ପାରିବେ, ସେଥି ନିମିତ୍ତ ମାରବାର ଉତ୍ତରାଧିକାରୀ ଶିଶୁ ଅଜିତଙ୍କ ମିଷ୍ଟାନ୍ନ ପରିପୂର୍ଣ୍ଣ ଗୋଟିଏ ବେତ୍ରାଧାର (basket) ମଧ୍ୟରେ ଲୁକ୍କାୟିତ କରି ଜଣେ ଧର୍ମପରାୟଣ ମୁସଲମାନ ହସ୍ତରେ ଅର୍ପଣ କରା ଯାଇଥିଲା । ସେହି ଭୃତ୍ୟ ଅତ୍ୟନ୍ତ ବିଶ୍ୱସ୍ତତା ସହକାରେ ଆପଣାର ନ୍ୟାସ ସମ୍ପାଦନ ପୂର୍ବକ ରାଜପୁତ୍ରଙ୍କୁ ନିରୂପିତ ସ୍ଥାନକୁ ଘେନି ଯାଇଥିଲା । ସେହି ସ୍ଥାନରେ ସାହସୀ ଦୁର୍ଗାଦାସ ରାଜପୁତ୍ରଙ୍କୁ ଭେଟିଲେ । ଦୁର୍ଗାଦାସ ଦିଲ୍ଲୀର ରାଜମାର୍ଗସ୍ଥ ମୋଗଲ ସୈନ୍ୟବ୍ୟୂହ ଭେଦ କରି ଆସି ସେହି ସ୍ଥାନରେ ସ୍ୱକୀୟ ଉତ୍ତରଜୀବୀ ଅନୁଚରବର୍ଗଙ୍କ ସହ ରାଜପୁତ୍ରଙ୍କ ପ୍ରତୀକ୍ଷାରେ ରହିଥିଲେ । "ଯାହାକୁ ରଖିବେ ଅନନ୍ତ, କି କରିବ ବଳବନ୍ତ ।" ବାସ୍ତବିକ୍, ସ୍ୱୟଂ ଭଗବାନ୍ ବର୍ତ୍ତମାନ ଅସହାୟ ଶିଶୁ ଅଜିତଙ୍କୁ ରକ୍ଷା କଲେ । ତାହା ନହେଲେ କି ଯେଉଁ ମୁସଲମାନ ଧର୍ମାବଲମ୍ବୀ ସମ୍ରାଟ୍ ଆଓରଙ୍ଗଜେବ ରାଠୋରମାନଙ୍କ ପ୍ରତି ଏପରି ନିର୍ଯ୍ୟାତନା କରୁଥିଲେ, ସେହି ଧର୍ମାବଲମ୍ବୀ ଦୀନହୀନ ଜଣେ ବ୍ୟକ୍ତି ଦ୍ୱାରା ରାଠୋର ରକ୍ଷା ପାଇଥାନ୍ତା ? ଯେତେବେଳେ ଅଜିତ ଯୌବନାବସ୍ଥାରେ ପଦାର୍ପଣ କରି ପରପଦ୍‌ଦଳିତ ସ୍ୱକୀୟ ପୈତୃକ ରାଜ୍ୟ ପୁନରୁଦ୍ଧାର ପୂର୍ବକ ମାରବାର ସିଂହାସନରେ ଅଭିଷିକ୍ତ ହେଲେ, ସେତେବେଳେ ଏହି ମୁସଲମାନଟି ସୁରକ୍ଷିତ ରାଜପୁତ୍ରଙ୍କର ତାଦୃଶ ସୁଖ ସମୃଦ୍ଧି ଓ ଅଭ୍ୟୁଦୟ ସନ୍ଦର୍ଶନ କରି ଅପାର ସୁଖ ଅନୁଭବ କରିଥିଲେ । ସେ ତାଙ୍କୁ ସର୍ବଦା "ବାବା" ସମ୍ବୋଧନ କରୁଥିଲେ ଏବଂ ମାରବାରର ରାଜଦରବାରରେ ତାଙ୍କର ପ୍ରଭୁତ ଖ୍ୟାତିପତ୍ତି ଥିଲା । ଅଜିତ ସେହି ସମୟରେ ଯେଉଁ ଭୂମି ସବୁ ଏହାଙ୍କୁ ପ୍ରଦାନ କରିଥିଲେ, ଏହାଙ୍କ ବଂଶଧରମାନେ ସେହି ଜମି ଅଦ୍ୟାପି ସମ୍ଭୋଗ କରୁଅଛନ୍ତି । [ରାଜସ୍ଥାନ ଲିଖିତ ହେବା ସମୟ (୧୮୧୯ ଖ୍ରୀଃ) ପର୍ଯ୍ୟନ୍ତ । ବର୍ତ୍ତମାନ କଣ ହୋଇଛି,

GPNanda Colln., Digitized by srujanika@gmail.com

କୁହାଯାଇ ନ ପାରେ । ] ଏହା ଅବଶ୍ୟ ଅଜିତଙ୍କ ବଂଶଧରମାନଙ୍କ ପକ୍ଷରେ ବିଶେଷ ଗୌରବର ବିଷୟ ବୋଲିବାକୁ ହେବ ।

ଏହି ସଦାଶୟ ମୁସଲମାନଟିର ଦୃଷ୍ଟାନ୍ତ ଗୋଟିଏ ଉତ୍ତମ ଶିକ୍ଷା ପ୍ରଦାନ କରୁଅଛି । ଧର୍ମର ବିଭିନ୍ନତାରେ ଚରିତ୍ରର ବିଭିନ୍ନତା ହୁଏ ନାହିଁ । ଚରିତ୍ର ବୈଷମ୍ୟର ଅନ୍ୟାନ୍ୟ କାରଣ ଅଛି, ତନ୍ମଧ୍ୟରେ ସ୍ୱଭାବ ସର୍ବପ୍ରଧାନ । "ସ୍ୱଭାବୋଃମୁର୍ଦ୍ଧ୍ନି ବର୍ତ୍ତତେ ।" ଆକବର ତ ମୁସଲମାନ ଧର୍ମାବଲମ୍ବୀ ଥିଲେ ତାଙ୍କୁ କାହିଁକି ହିନ୍ଦୁମାନେ "ଦିଲ୍ଲୀଶ୍ୱରୋ ବା ଜଗଦୀଶ୍ୱରୋ ବା" ବୋଲି ପୂଜା କରୁଥିଲେ ? ସବୁ ଧର୍ମ ସତ୍ୟ ରୂପ ଦୃଢ଼ ଭିତ୍ତି ଉପରେ ଦଣ୍ଡାୟମାନ ଓ ଏକ ସନାତନ "ମାନବ ଧର୍ମ"ର ଶାଖା ମାତ୍ର । ମନୁଷ୍ୟର ଦୁର୍ବୁଦ୍ଧି ହିଁ ଧର୍ମକୁ କଳଙ୍କିତ କରୁଅଛି । ଧର୍ମ କେବେହେଲେ ମନୁଷ୍ୟକୁ କଳଙ୍କିତ କରନ୍ତି ନାହିଁ । ଧର୍ମ ସର୍ବଦା ମନୁଷ୍ୟକୁ ପବିତ୍ରତା ଆଡ଼କୁ ଘେନିଯାନ୍ତି ।

ତତ୍ପରେ ପରମ ବିଶ୍ୱାସୀ ଦୁର୍ଗାଦାସ କତିପୟ ବିଶ୍ୱସ୍ତ ବନ୍ଧୁ ସହ ଶିଶୁ ଅଜିତଙ୍କୁ ସଙ୍ଗରେ ଘେନି ସୁଦୂରବର୍ତ୍ତୀ, ଜନସମାଗମ ରହିତ, ତପସ୍ୱୀବୃନ୍ଦ ନିଷେବିତ ଆରବୋଲ୍ଲୀ ପର୍ବତଶ୍ରେଣୀର ସର୍ବୋଚ୍ଚ ଶୃଙ୍ଗ ଆବୁ ନାମକ ପର୍ବତକୁ ପ୍ରସ୍ଥାନ କଲେ ଏବଂ ସେଠାରେ ରାଜପୁତ୍ରଙ୍କୁ କତିପୟ ସନ୍ନ୍ୟାସୀଙ୍କ ଆଶ୍ରମରେ ରଖିଲେ । ଦୁର୍ଗାଦାସ ପ୍ରମୁଖ ରାଜପୁତ୍ରଙ୍କ କେତେକ ବିଶ୍ୱସ୍ତ ବନ୍ଧୁଙ୍କ ଛଡ଼ା ଆଉ କେହି ଏ ବିଷୟ ଜାଣି ନଥିଲେ । ମାରୱାରର ପ୍ରଜାମାନଙ୍କୁ କେବଳ ଏହି କଥା ବିଶ୍ୱସ୍ତ ସୂତ୍ରରେ ଶୁଣାଇ ଦିଆ ଯାଇଥିଲା ଯେ ଅଜିତ ନାମରେ ଯଶୋବନ୍ତର ଏକ ଶିଶୁ ସନ୍ତାନ ଜୀବିତ ଅଛନ୍ତି ଏବଂ ଦୁର୍ଗାଦାସ ଓ ତାଙ୍କ ସଙ୍ଗୀମାନେ ତାଙ୍କର ରକ୍ଷକ, କିନ୍ତୁ ସେ କେଉଁଠି ଓ କି ପ୍ରକାରେ ଅଛନ୍ତି ତାହା କୁହା ଯାଇ ନଥିଲା । ମାରବାରବାସୀମାନେ ଏତିକିରେ ସନ୍ତୁଷ୍ଟ ହୋଇ ଅଜିତଙ୍କ ନାମକୁ ସିଂହାସନରେ ସ୍ଥାପନ କରି ନାବାଳକ ରାଜାଙ୍କ ରାଜ୍ୟ ରକ୍ଷା କରିବାରେ ବଦ୍ଧପରିକର ହେଲେ ।

ଅଜିତ ଜୀବନର ପ୍ରଥମ ଷଡ୍‌ବିଂଶ ବର୍ଷ ଅର୍ଥାତ ସକାବ୍ଦ ୧୭୬୩ (ଖ୍ରୀଃ ୧୭୦୭) ସାଲରେ ଆଉରଙ୍ଗଜେବଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଆବୁ ପର୍ବତର ନିରାପଦ କ୍ରୋଡ଼ରେ ଆଶ୍ରୟ ଗ୍ରହଣ କରିଥିଲେ । ଏହି ସୁଦୀର୍ଘ କାଳ (ବିଶେଷତ ପ୍ରଥମ ଛଅ ବର୍ଷ) ନିରନ୍ତର ଯୁଦ୍ଧ ଓ ଅକଳ୍ପ ରକ୍ତପାତରେ ଅତିବାହିତ ହୋଇଥିଲା । ଆଉରଙ୍ଗଜେବ ମାରବାର ରାଜ୍ୟକୁ ନିଜ କୋପାନଳର ମୁଖ୍ୟ ଲକ୍ଷ୍ୟସ୍ଥଳ ମନେ କରିଥିଲେ । ଏହି ଭୟଙ୍କର ବିପତ୍ତି କାଳ ମଧ୍ୟରେ ରାଠୋରମାନଙ୍କର ରାଜଭକ୍ତି, ବିଶ୍ୱସ୍ତତା ଓ ସ୍ୱଦେଶ ପ୍ରେମର ପରାକାଷ୍ଠା ପ୍ରଦର୍ଶିତ ହୋଇଥିଲା ।

ଅଜିତଙ୍କର ଜନ୍ମର ପ୍ରଥମ ବର୍ଷ ମଧ୍ୟରେ ଆଉରଙ୍ଗଜେବ ସ୍ୱୟଂ ମହତୀ ସେନାର ଅଧ୍ୟକ୍ଷ ହୋଇ ମାରବାର ବିରୁଦ୍ଧରେ ପ୍ରୟାଣ କଲେ । ରାଜଧାନୀ ଯୋଧପୁର ନଗରୀ ପରିବେଷ୍ଟିତ ହୋଇ ତତ୍ପରେ ଲୁଣ୍ଠିତ ହେଲା ଏବଂ ଅନ୍ୟାନ୍ୟ ପ୍ରଧାନ ପ୍ରଧାନ ନଗରମାନଙ୍କ ମଧ୍ୟ ତୁଲ୍ୟ ଦଶା ଘଟିଥିଲା । ହିନ୍ଦୁ ଧର୍ମର ସମସ୍ତ ଚିହ୍ନ ପଦଦଳିତ ହୋଇଥିଲା, ଦେବମନ୍ଦିରମାନ ଚୂର୍ଣ୍ଣୀକୃତ ହୋଇ ସେହି ଭୂମିରେ ମସଜିଦ୍‌ମାନ ନିର୍ମିତ ହୋଇଥିଲା ।

GPNanda Colln., Digitized by srujanika@gmail.com

ମାରବାରର ପ୍ରତ୍ୟେକ ରାଜପୁତକୁ ବଳପୂର୍ବକ ମୁସଲମାନ ଧର୍ମରେ ଦୀକ୍ଷିତ ନ କଲେ ଯେମନ୍ତ କି ତାଙ୍କର ପ୍ରତିହିଂସାଗ୍ନିର ଆଉ ଶାନ୍ତି ନାହିଁ । ସମ୍ରାଟଙ୍କ ଏହି ଉନ୍ମତ୍ତ ଓ ଅବିବେଚନା ପୂର୍ଣ୍ଣ ଆଚରଣର ବିଷମୟ ଫଳ କେବଳ ସେ ଯେ ନିଜେ ଭୋଗ କରିଥିଲେ ତାହା ନୁହେଁ । ତାଙ୍କ ବଂଶଧରମାନେ ମଧ୍ୟ ଏହା ଭୋଗ କରିଥିଲେ, କାରଣ ଏହାହିଁ ମୋଗଲ ସାମ୍ରାଜ୍ୟର ଅଧଃପତନର ପ୍ରଧାନ କାରଣ । ପୁଣି ସମ୍ରାଟ ସମଗ୍ର ହିନ୍ଦୁ ଜାତି ଉପରେ 'ଜିଜିୟା' ନାମକ ଘୃଣିତ କର ସ୍ଥାପନ କରିବାରୁ ସ୍ୱଦେଶ ପ୍ରେମିକ ଓ ସ୍ୱଧର୍ମ ପରାୟଣ ସମସ୍ତ ବ୍ୟକ୍ତି ଏକ ସୁଦୃଢ଼ ଏକତା ସୂତ୍ରରେ ବଦ୍ଧ ହୋଇ ସମ୍ରାଟଙ୍କ ବିରୁଦ୍ଧାଚରଣ କରିବାକୁ ଲାଗିଲେ । ପରମ ଧାର୍ମିକ, ଉଦାର ଚରିତ ମହାତ୍ମା ଆକବର ମହୀୟସୀ ଉଦାର ନୀତି ଅବଲମ୍ବନ କରି ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ଯେଉଁ ଭ୍ରାତୃଭାବ ସ୍ଥାପନ କରିଥିଲେ ଏବଂ ଯେଉଁ ସୁରମ୍ୟ ଭାରତ-ସାମ୍ରାଜ୍ୟ-ମନ୍ଦିର ନିର୍ମାଣ କରି ସେମାନଙ୍କୁ ପ୍ରଦାନ କରି ଯାଇଥିଲେ, ତାହା ଆଉରଙ୍ଗଜେବଙ୍କ ହସ୍ତରେ 'ମାଙ୍କଡ଼ ହାତରେ ଶାଳଗ୍ରାମ'ର ଦଶା ପ୍ରାପ୍ତ ହେବାର ଦେଖି କେଉଁ ହୃଦୟବାନ ବ୍ୟକ୍ତି ମର୍ମାହତ ନ ହେବେ ? ଅନ୍ୟ କଥା ତେଣିକି ଥାଉ, ଆଓରଙ୍ଗଜେବଙ୍କ ସ୍ୱକୀୟ ପୁତ୍ର ଯୁବରାଜ ଆକବର ବୀର ହୃଦୟ ରାଜଭକ୍ତ ରାଜପୁତମାନଙ୍କ ପ୍ରତି ନିଜ ପିତାଙ୍କର ଈଦୃଶ କ୍ରୁର ବ୍ୟବହାର ଓ ପିତୃମାତୃ-ଶୂନ୍ୟ ନାବାଳକ ଶିଶୁ ଅଜିତଙ୍କର ଏପରି କଷ୍ଟର ନିର୍ଯାତନା ଦେଖି ଅତୀବ ଦୁଃଖିତ ହୋଇଥିଲେ ଏବଂ ପରିଶେଷରେ ୧୬୩୭ ଶକାବ୍ଦରେ (୧୬୮୧ ଖ୍ରୀଷ୍ଟାବ୍ଦରେ) ସେ ଆପଣାର ଅଧୀନସ୍ଥ କର୍ମଚାରୀ ଟାଇବର ଖାଁଙ୍କୁ କରଗତ କରି ଦୁର୍ଗାଦାସ ପ୍ରମୁଖ ରାଠୋରମାନଙ୍କ ସହିତ ସନ୍ଧି ସ୍ଥାପନ ଏବଂ ସ୍ୱୀୟ ମସ୍ତକୋପରି ରାଜଛତ୍ର ଧାରଣ ପୂର୍ବକ ଆପଣାକୁ ସମ୍ରାଟ ବୋଲି ଘୋଷଣା କଲେ । ଏମନ୍ତ କି ସେ ଆପଣା ନାମରେ ମୁଦ୍ରାଦି ପ୍ରସ୍ତୁତ କରାଇଥିଲେ । ଏଣେ ଆଓରଙ୍ଗଜେବ ଦୁର୍ଗାଦାସଙ୍କ ସହିତ ଆକବରଙ୍କର ଈଦୃଶ ମିଳନର ବାର୍ତ୍ତା ଆଜମିରଠାରେ ଶ୍ରବଣ କରି କ୍ରୋଧ ଓ ଦୁଃଖରେ ଅଧୀର ହୋଇପଡିଲେ । କାରଣ, ସେ ଦୁର୍ଗାଦାସଙ୍କୁ ନିରତିଶୟ ଭୟ କରୁଥିଲେ । ଏହି ସମ୍ପର୍କରେ ଗୋଟାଏ ସୁନ୍ଦର ଗଳ୍ପ ଅଛି । ଶିବାଜୀ ଓ ଦୁର୍ଗାଦାସ—ଏହି ଦୁଇଜଣ ଆଓରଙ୍ଗଜେବଙ୍କ ପ୍ରଧାନ ଶତ୍ରୁ ଥିଲେ । ସେମାନଙ୍କ ଯୋଗୁ ତାଙ୍କୁ ରାତିରେ ନିଦ ହୁଏନାହିଁ । ଆଓରଙ୍ଗଜେବ ଏକଦା ଜଣେ ଚିତ୍ରକରଙ୍କୁ ଏହି ଦୁଇଜଣଙ୍କ ଛବି ଅଙ୍କିତ କରିବାକୁ ଆଦେଶ କରିଥିଲେ । ଉକ୍ତ ଛବିରେ ଶିବାଜୀ ଗୋଟାଏ ଖଟ ଉପରେ ବସିଅଛନ୍ତି, କିନ୍ତୁ ଦୁର୍ଗାଦାସ ତାଙ୍କର ସାଧାରଣ ଅବସ୍ଥାରେ ଥାଇ ଅର୍ଥାତ ଘୋଡ଼ା ଉପରେ ବସି ଶୁଖିଲା ମକା ଗଛର ନିଆଁରେ ଆପଣା ବର୍ଚ୍ଛାର ଅଗ୍ରଭାଗରେ ଯବ ରୁଟି ସେକୁଅଛନ୍ତି । ଆଓରଙ୍ଗଜେବ ପ୍ରଥମେ ଏହି ଚିତ୍ରଦ୍ୱୟ ଦେଖି ହଠାତ୍ ଚିତ୍କାର କରିଉଠିଲେ—"I may entrap that fellow (meaning Sivaji), but this dog is born to be my bane." 'ମୁଁ ଏ ଲୋକଟାକୁ (ଶିବାଜୀଙ୍କୁ) ଫାନ୍ଦରେ ପକାଇପାରେ, କିନ୍ତୁ ଏହିଟା— (ଦୁର୍ଗାଦାସ) ମୋ ଜୀବନର ମୁଦେଇ ।''

ମହାକୌଶଳୀ ଆଓରଙ୍ଗ ଈଦୃଶ ବିପଦରେ ପଡ଼ି ବୁଦ୍ଧି ହତ୍ରୋହାହା ହୋଇ ନଥିଲେ । ସେ ନାନାପ୍ରକାର ଉପାୟ ଚିନ୍ତା କରିବାକୁ ଲାଗିଲେ । ଏଣେ ଆକବର ଅସଂଖ୍ୟ ରାଜପୁତ ସୈନ୍ୟ ସମଭିବ୍ୟାହାରରେ ଆଜମିର ଅଭିମୁଖରେ ଯାତ୍ରା କଲେ । କିନ୍ତୁ ଏହି ସମୟରେ ସେ ସମସ୍ତ ଭାର ଟାଇବରଙ୍କ ହସ୍ତରେ

GPNanda Colln., Digitized by srujanika@gmail.com

ନ୍ୟସ୍ତ କରି ଆପେ ରମଣୀବୃନ୍ଦଙ୍କ ସହିତ ସଙ୍ଗୀତ ଶ୍ରବଣ ଓ ଅନ୍ୟାନ୍ୟ ଆମୋଦ ପ୍ରମୋଦରେ ମତ୍ତ ରହିଲେ । ଇତ୍ୟବସରେ ଆଓରଙ୍ଗଜେବ ବିପୁଳ ପୁରସ୍କାରର ଆଶା ଦେଖାଇ ତାଇବରଙ୍କୁ କରଗତ କରିନେଲେ । ପ୍ରଲୋଭନ ଦମନ କରି ନ ପାରି ରାତ୍ରି ସମୟରେ ତାଇବର ଆଓରଙ୍ଗଜେବଙ୍କ ଶିବିରକୁ ଯାଇ ସେଠାରୁ ରାଠୋରମାନଙ୍କ ନିକଟକୁ ଖଣ୍ଡିଏ ପତ୍ର ଲେଖିଲେ । ସେଥିରେ ଲେଖାଥିଲା— 'ବର୍ତ୍ତମାନ ପିତା ଓ ପୁତ୍ର ଏକ ହୋଇଅଛନ୍ତି, ତୁମେମାନେ ସ୍ୱରାଜ୍ୟକୁ ପ୍ରସ୍ଥାନ କର ।' ସ୍ୱକୀୟ ମୋହରଯୁକ୍ତ ଏହି ପତ୍ର, ପତ୍ରବାହକ ହାତରେ ଦେଇ ତାଇବର ଆପଣାର ପୁରସ୍କାର ପାଇବା ନିମିତ୍ତ ଆଓରଙ୍ଗଜେବଙ୍କ ନିକଟରେ ଉପସ୍ଥିତ ହେଲେ । କିନ୍ତୁ ମୁହଁରୁ କଥା ନ ବାହାରୁଣୁ "A blow of the mece from the hand of the monarch sent his soul to hell— ସମ୍ରାଟଙ୍କ କରଧୃତ ରାଜଦଣ୍ଡର ଏକ ପ୍ରହାର ଦ୍ୱାରା ତାହାର ଆତ୍ମା ନରକରେ ଦାଖଲ ! ଯେପରି କାର୍ଯ୍ୟ ସେହିପରି ପୁରସ୍କାର । ଏଣେ ସେହି ପୈଶାଚିକ ବାର୍ତ୍ତାବହ ନିଶୀଥ ସମୟରେ ରାଠୋର ଶିବିରରେ ଉପସ୍ଥିତ ହେଲା ଏବଂ ପତ୍ର ସେମାନଙ୍କ ହସ୍ତରେ ଦେଇ କହିଲା, ତାଇବର ଖାଁ ମଧ୍ୟ ନିହତ ହେଲାଣି । କ୍ଷଣକ ମଧ୍ୟରେ ରାଠୋର ଶିବିରରେ ଘୋର ବିଶୃଙ୍ଖଳା ଉପସ୍ଥିତ ହେଲା । ସେମାନେ ସେହି ରାତ୍ର ମଧ୍ୟରେ ପଳାୟନ କରି ଆକବରଙ୍କ ଶିବିରରୁ ଏକ କ୍ରୋଶ ଦୂରରେ ରହିଲେ । ଏଣେ ଅକବର ଆମୋଦ ସାଗରରେ ନିମଗ୍ନ ।

ଏହି ଘଟଣା ଦ୍ୱାରା ରାଜପୁତ ଚରିତ୍ରର ଘୋର ଚାପଲ୍ୟ ଓ ଅବିମୃଷ୍ୟ-କାରିତାର ପରିଚୟ ମିଳୁଅଛି । ସେ କେବଳ ସାମୟିକ ଉତ୍ତେଜନାର ବଶବର୍ତ୍ତୀ ହୋଇ କାର୍ଯ୍ୟ କରିଥାଏ । ସେହି ଘଟଣାର ସତ୍ୟତା ବା ଅସତ୍ୟତାର ବିଷୟରେ କୌଣସି ତଦନ୍ତ ନ କରି ଏପରି ହଠାତ୍ ଉଚ୍ଛୃଙ୍ଖଳ ଭାବରେ କାର୍ଯ୍ୟ କରିବା ଆଦୌ ଉଚିତ ହୋଇ ନାହିଁ ।

ଆକବରଙ୍କ ମୋହ ନିଦ୍ରା ଶୀଘ୍ର ଭାଙ୍ଗିଗଲା । ପରଦିନ ସମସ୍ତ ବୃତ୍ତାନ୍ତ ଅବଗତ ହୋଇ ସେ କେବଳ ଏକ ସହସ୍ର ପରିମିତ ସୈନ୍ୟ ସମଭିବ୍ୟାହାରରେ ରାଜପୁତମାନଙ୍କ ଶରଣାପନ୍ନ ହେଲେ । ଶରଣାଗତବତ୍ସଳ କ୍ଷତ୍ରିୟଧର୍ମନିଷ୍ଠ ବୀରପୁଙ୍ଗବ ରାଜପୁତମାନେ ସମସ୍ତ ବିଷୟ ବୁଝିପାରି ନିରାଶ୍ରୟ ଆକବରଙ୍କୁ ଅଭୟ ପ୍ରଦାନପୂର୍ବକ ତାହାଙ୍କୁ ରକ୍ଷା କରିବାକୁ ଦୃଢ଼ସଂକଳ୍ପ ହେଲେ । ଦୁର୍ଗା-ଦାସ (The ulysses of the Rathors) ଆପଣାର ବଚ୍ଛା ବଚ୍ଛା ଅନୁଚରବର୍ଗ ସହିତ ଆକବରଙ୍କର ଶରୀରରକ୍ଷକ ହେଲେ । ଏଣେ ଆଓରଙ୍ଗଜେବ ଆପଣାର କୌଶଳ ପ୍ରୟୋଗରେ ବ୍ୟସ୍ତ ରହିଅଛନ୍ତି । ସେ ପ୍ରଥମେ ଦୁର୍ଗାଦାସଙ୍କୁ ପ୍ରଲୋଭନରେ ପକାଇବାକୁ ମନସ୍ଥ କରି ତାଙ୍କ ନିକଟକୁ ଚାଳିଶ ସହସ୍ର ସ୍ୱର୍ଣ୍ଣମୁଦ୍ରା ପ୍ରେରଣ କଲେ । ସୁଚତୁର ଦୁର୍ଗାଦାସ ତାହା ଗ୍ରହଣ କରି ନିଃସ୍ୱ ଆକବରଙ୍କ ଅଭାବ ମୋଚନାର୍ଥେ ତାହାଙ୍କୁ ତାହା ପ୍ରଦାନ କରିଥିଲେ । (ପିରସ) (Phyrrhus) ନାମକ ଗ୍ରୀକ ବୀର ଯେତେବେଳେ ରୋମ ବିରୁଦ୍ଧରେ ଅଭିଯାନ କରିଥିଲେ, ସେତେବେଳେ ସେ ଏକଦା ଜନୈକ ରୋମୀୟ ସେନାପତିଙ୍କ ନିକଟକୁ ଏହିପରି ସ୍ୱର୍ଣ୍ଣମୁଦ୍ରା ପ୍ରେରଣ କରିଥିଲେ । ରୋମୀୟ ସେନାପତି ସେତେବେଳେ ନିଜ ଆହାରାର୍ଥେ କିଛି ଶାଲଗମ ସ୍ୱହସ୍ତରେ ରନ୍ଧନ କରୁଥିଲେ । ପିରସଙ୍କ ଦୂତକୁ ଦେଖି ସେନାପତି ଉତ୍ତର କଲେ, "ଯାଅ ରାଜାଙ୍କୁ କହିବ, ମୁଠାଏ ଶାଲଗମ ଦ୍ୱାରା ଯେତେବେଳେ ମୋର କାର୍ଯ୍ୟ ଚଳିଯାଉଛି, ମୋହର ସ୍ୱର୍ଣ୍ଣ ମୁଦ୍ରାରେ ପ୍ରୟୋଜନ କ'ଣ ?" ଏହା କହି ମୁଦ୍ରାଗୁଡ଼ିକ ଫେରାଇ

GPNanda Colln., Digitized by srujanika@gmail.com

ଦେଇଥିଲେ । ପିରସ ସେନାପତିଙ୍କ ଉଦ୍ଦଣ ନିର୍ଲୋଭତାରେ ମୁଗ୍ଧ ହୋଇଥିଲେ ଏବଂ ରୋମ ଜୟ ବିଷୟରେ ହତାଶ ହୋଇଥିଲେ । ରଜପୁତ ଓ ରୋମୀୟ ଉଭୟବୀରଙ୍କ କାର୍ଯ୍ୟ ଧର୍ମ ପ୍ରଣୋଦିତ ଏଣୁ ପ୍ରଶଂସନୀୟ କିନ୍ତୁ ରଜପୁତବୀରଙ୍କ କାର୍ଯ୍ୟରେ ଧର୍ମ ସହିତ ସାମୟିକ ପ୍ରୟୋଜନାନୁଯାୟୀ ଚତୁରତା ମିଶ୍ରିତ ଥିବାରୁ ଆହୁରି ଅଧିକ ପ୍ରଂଶଂସାର ଯୋଗ୍ୟ । ଆକବର ସହାନୁଭୂତି ଓ ସମଦୁଃଖିତାର ଏପରି ଉଜ୍ଜ୍ୱଳ ପ୍ରମାଣ ଦେଖି ଏକାବେଳକେ ବିମୁଗ୍ଧ ହୋଇ ଯାଇଥିଲେ । ଆଓରଙ୍ଗଜେବ ଏଥିରେ ବିଫଳ ମନୋରଥ ହୋଇ ଆକବରଙ୍କ ଅନୁଧାବନାର୍ଥେ ଏକଦଳ ସୈନ୍ୟ ପ୍ରେରଣ କଲେ । ଆକବର ନିର୍ମମ ପିତାଙ୍କଠାରୁ ସର୍ବଦା ଦୂରରେ ରହିବା ଲାଗି କାତର ହୋଇପଡିଲେ । ଦୁର୍ଗାଦାସ ତାହାଙ୍କୁ ଅଭୟ ପ୍ରଦାନ କଲେ ଓ ଆପଣାର ପ୍ରତିଜ୍ଞା ରକ୍ଷଣାର୍ଥେ ଅନ୍ୟ ସମସ୍ତ କାର୍ଯ୍ୟ ପରିତ୍ୟାଗ କଲେ, ଶିଶୁ ଅଜିତଙ୍କ ଅଭିଭାବକତ୍ୱ ସ୍ୱକୀୟ ଅଗ୍ରଜ ବୀର ସୋନିଂ ଦାସଙ୍କ (Soning Das) ହସ୍ତରେ ନ୍ୟସ୍ତ କରି ଆପେ ଅନୁଚରବର୍ଗ ସମେତ ଆକବରଙ୍କ ଶରୀରରକ୍ଷକ ହୋଇ ଦାକ୍ଷିଣାତ୍ୟକୁ ଯାତ୍ରା କଲେ, (ଆକବର ପ୍ରଥମେ ମରହଟ୍ଟାମାନଙ୍କ ଆଶ୍ରୟ ନେଇଥିଲେ, କିନ୍ତୁ ପରିଶେଷରେ ପାରସ୍ୟକୁ ପଳାଇବାକୁ ବାଧ୍ୟ ହୋଇଥିଲେ ।) ଏବଂ ସମସ୍ତ ବାଧାବିଘ୍ନ ଅତିକ୍ରମ କରି ଦାକ୍ଷିଣାତ୍ୟରେ ଉପନୀତ ହେଲେ ।

ଏହି ସବୁ କଥା ଜାଣିପାରି ଆଓରଙ୍ଗଜେବ କ୍ରୋଧବିଦଗ୍ଧ ହୃଦୟରେ ସମଗ୍ର ରଠୋର ବଂଶର ଉଚ୍ଛେଦ ସାଧନାର୍ଥେ ଦୃଢ଼ପ୍ରତିଜ୍ଞ ହେଲେ । ମିବର ଜୟ ପ୍ରଭୃତି ଅନ୍ୟ ସମସ୍ତ କାର୍ଯ୍ୟ ବନ୍ଦ ରଖି ମାରବାର ବିରୁଦ୍ଧରେ ଅନବରତ ସୈନ୍ୟ ପ୍ରେରଣ କରିବାକୁ ଲାଗିଲେ । ସୁଖର ବିଷୟ ଯେ ଶିଶୁ ଅଜିତ ଆବୁ ପର୍ବତରେ 'ଅଜ୍ଞାତବାସ'ରେ ଅଛନ୍ତି ବୋଲି ଆଓରଙ୍ଗଜେବଙ୍କୁ ଜଣା ନଥିଲା । ଏହି ଅଜ୍ଞାନତା ରକ୍ଷା କରିବା ଅବଶ୍ୟ ତାଙ୍କର ବିଶ୍ୱସ୍ତ ରକ୍ଷୀକମାନଙ୍କ ପକ୍ଷରେ ପ୍ରଚୁର ପ୍ରଶଂସାର ବିଷୟ ବୋଲିବାକୁ ହେବ ।

ଏଣେ ରଠୋରମାନେ ନିରନ୍ତର ମୋଗଲମାନଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ଥିଲେ । ସୋନିଂ ଦାସ ଅତୁଳ ବୀରତ୍ୱ ସହକାରେ ମୋଗଲମାନଙ୍କୁ ଅନେକ ଥର ପରାସ୍ତ କଲେ । ମାତ୍ର ପରିଶେଷରେ ଆଓରଙ୍ଗଜେବ ବିଷ ପ୍ରୟୋଗ ଦ୍ୱାରା ତାଙ୍କର ପ୍ରାଣ ବିନାଶ କରାଇଲେ । ଏହା ୧୭୩୮ ଶକାବ୍ଦରେ ଘଟିଥିଲା । ଏଥିପରେ ଗୀତୀ ମୁକୁନ୍ଦ ସିଂହ ନାମକ ଜନୈକ ପରମବିଶ୍ୱାସୀ ରଜପୁତ ଅଜିତଙ୍କ ଅଭିଭାବକ ହୋଇଥିଲେ ।

ଏହିପରି ନିରନ୍ତର ଶତ୍ରୁକର୍ତ୍ତୃକ ନିପାଡିତ ହୋଇ ରଠୋର ସେନା ପୁନର୍ବାର ଆରାବଲ୍ଲୀରେ ଆଶ୍ରୟ ଗ୍ରହଣ କଲେ । ସେଠାରେ ଆପଣାର ସୁଦୃଢ଼ ପାର୍ବତ୍ୟ ନିବାସରେ ରହି ଏକପ୍ରକାର 'ଗରିଲା' ଯୁଦ୍ଧନୀତି ଅବଲମ୍ବନ ପୂର୍ବକ ସୁବିଧାକ୍ରମେ ଶତ୍ରୁସଂହାର କରିବାକୁ ଲାଗିଲେ । ଏହିପରି ୧୭୪୨ ଶକାବ୍ଦ ପର୍ଯ୍ୟନ୍ତ ୭ ବର୍ଷ କାଳ ନିରବଚ୍ଛିନ୍ନ ରକ୍ତପାତ ଓ ଲୋକକ୍ଷୟକର ଭୀଷଣ ସଂଗ୍ରାମରେ ଅତିବାହିତ ହେଲା ।

ଇତି ମଧ୍ୟରେ ମାରବାରର ପ୍ରଜାବର୍ଗ ରଜ ବିରହବେଦନା ଆଉ ସହ୍ୟ କରିନପାରି ଯୁବରଜ ଅଜିତଙ୍କୁ ଦେଖିବାକୁ ଅସ୍ଥିର ହୋଇ ପଡ଼ିଲେ ।

GPNanda Colln., Digitized by srujanika@gmail.com

୧୬୪୩ ଶକାବ୍ଦରେ ସେମାନେ ଗୀତ ମୁକୁନ୍ଦ ସିଂହଙ୍କ ନିକଟରେ ପ୍ରାର୍ଥନା କରି କହିଲେ, "ପ୍ରଭୁଙ୍କ ଦର୍ଶନ ବିନା ରୁଚି ପାଣି ରୁଚୁ ନାହିଁ ।" ମୁକୁନ୍ଦ ସେମାନଙ୍କ ଏକାନ୍ତ ଅନୁରୋଧ ଲଙ୍ଘନ କରି ନପାରି ସେମାନଙ୍କୁ ଆବୁ ପର୍ବତକୁ ଆସିବାକୁ ଅନୁମତି ଦେଲେ । ୧୬୪୩ ଶକାବ୍ଦର ଚୈତ୍ର ମାସରେ ସେମାନେ ଯେତେବେଳେ ଅଜିତଙ୍କୁ ଦେଖିଲେ, ସେତେବେଳେ "ପଦ୍ମ ଯେପରି ଭାନୁ ଦର୍ଶନରେ ବିକଶିତ ହୁଏ, ପ୍ରତ୍ୟେକ ରାଠୋରର ହୃଦୟ-ପଦ୍ମ ଉଜ୍ଜ୍ୱଳକାନ୍ତି, ଅମିତତେଜା, ପ୍ରିୟଦର୍ଶନ ଯୁବରାଜଙ୍କ ସନ୍ଦର୍ଶନରେ ସେହିପରି ବିସ୍ତାରିତ ହେବାକୁ ଲାଗିଲା ।" ସେଠାରେ କେବଳ ଯେ ମାରବାରର ପ୍ରଜାମାନେ ଉପସ୍ଥିତ ଥିଲେ, ତାହା ନୁହେଁ; ରାଜସ୍ଥାନର ଅନ୍ୟାନ୍ୟ ରାଜ୍ୟର ପ୍ରଧାନ ପ୍ରଧାନ ରାଜାମାନେ ମଧ୍ୟ ଉପସ୍ଥିତ ହୋଇଥିଲେ । ସେମାନଙ୍କ ମଧ୍ୟରେ ମିବାରାଧିପତି ବୀର ହୃଦୟ ରାଣା ରାଜସିଂହ ମଧ୍ୟ ଉପସ୍ଥିତ ଥିଲେ । ଏ ଅଜିତଙ୍କ ଜନ୍ମ ଦିବିସଠାରୁ ତାଙ୍କ ରକ୍ଷୀ ସକାଶେ ରାଠୋରମାନଙ୍କୁ ଯଥାସ୍ରେନାସ୍ତି ସାହାଯ୍ୟ କରିଥିଲେ ବୋଲି ଅଉରଙ୍ଗଜେବଙ୍କର ବିଶେଷ ବିରାଗଭାଜନ ହୋଇଥିଲେ । ହର୍ ରାଓ ନାମକ ଜନୈକ ପ୍ରଧାନ ଦଳପତି ପ୍ରଥମେ ଯୁବରାଜ ଅଜିତଙ୍କୁ ପ୍ରଣାମ କରିଥିଲେ । ତତ୍ପରେ ମାରବାରର ସମଗ୍ର ପ୍ରଜାବର୍ଗ ବହୁ ଧନରତ୍ନ ଓ ଅଶ୍ୱାଦି ଉପହାର ପ୍ରଦାନ ପୂର୍ବକ ଅମିତତେଜା ଅଜିତଙ୍କୁ ଅଭିବାଦନ କଲେ । ଏହିପରି ଶୁଭ ମୁହୂର୍ତ୍ତରେ ଅଜିତଙ୍କ ବିଷୟ ସଂସାରରେ ପ୍ରଚାରିତ ହେଲା ।

ତତ୍ପରେ ସମ୍ମିଳିତ ରାଜନ୍ୟବର୍ଗ ଅଜିତଙ୍କୁ ମହାସମାରୋହରେ ନାନା ସ୍ଥାନ ଦେଖାଇବାକୁ ଘେନିଗଲେ । ଆହୱା (Ahawa), ରାସପୁର, ବିଲାର (Bilara) ପ୍ରଭୃତି ସ୍ଥାନର ଦଳପତିମାନେ ବହୁ ସମ୍ମାନ ପୁରଃସର ଆସି ଅଜିତଙ୍କ ଛତ୍ର ତଳେ ରୁଣ୍ଡ ହେଲେ । ଇତ୍ୟବସରେ ଦୁର୍ଗାଦାସ ଦାକ୍ଷିଣାତ୍ୟରୁ ଆସି ୧୬୪୬ ଶକାବ୍ଦ ଭାଦ୍ର ମାସରେ ଗୋକର୍ଣ୍ଣ ନାମକ ସ୍ଥାନରେ ଭେଟିଲେ ।

ଏହି ସମୟଠାରୁ କୁମାର ବିକ୍ରମ କୁମାର ଅଜିତ ଯବନ କବଳରୁ ପୈତୃକ ରାଜ୍ୟର ଉଦ୍ଧାରବ୍ରତରେ ସ୍ୱୟଂବ୍ରତୀ ହେଲେ । କେତେବେଳେ ଶତ୍ରୁମାନଙ୍କୁ ତଡ଼ି ଦେଇ ରାଜ୍ୟର କିୟଦଂଶ ଅଧିକାର କରନ୍ତି । ପୁଣି କେତେବେଳେ ପ୍ରବଳ ପରାକ୍ରାନ୍ତ ଶତ୍ରୁ କର୍ତ୍ତୃକ ପରାସ୍ତ ଓ ବିତାଡ଼ିତ ହୋଇ ଆରାବଲ୍ଲୀ କ୍ରୋଡ଼ରେ ଆଶ୍ରୟ ନିଅନ୍ତି । ଏହିପରି ଜୟ ପରାଜୟ, ଅରଣ୍ୟ ବାସ ଓ କଷ୍ଟ ଭୋଗରେ ଅଷ୍ଟାଦଶ ବର୍ଷକାଳ ଅତିବାହିତ ହେଲା ।

ପରିଶେଷରେ ଶକାବ୍ଦ ୧୬୬୩ ସାଲରେ (ଖ୍ରୀ : ୧୭୦୭ ସାଲରେ) ଅଉରେଙ୍ଗଜେବଙ୍କ ମୃତ୍ୟୁ ବାର୍ତ୍ତା ଶ୍ରବଣ କରି ଅଜିତ ଅବିଳମ୍ବେ ଅଶ୍ୱାରୋହଣ ପୂର୍ବକ ସ୍ୱରାଜ୍ୟାଭିମୁଖରେ ଯାତ୍ରା କଲେ । ସ୍ୱକୀୟ ରାଜଧାନୀ ଯୋଧପୁର ନଗରୀରେ ପ୍ରବେଶ କରି ଅଜିତ ଷଡ଼ବିଂଶତୀ ବର୍ଷ ବୟସରେ ସ୍ୱକୀୟ ପିତୃ-ପିତାମହାଦିଙ୍କ ଆବାସ ଗୃହରେ ସର୍ବ ପିଥମେ ପଦାର୍ପଣ କଲେ । ଷଡ଼ବିଂଶତୀ ବର୍ଷ ବ୍ୟାପି ଘୋର ଯାତନା ଭୋଗ ଜନିତ ପ୍ରଚଣ୍ଡ କ୍ରୋଧରେ ଉନ୍ମତ୍ତ ହୋଇ ରାଜପୁତମାନେ ଅରକ୍ଷିତ ଯବନମାନଙ୍କୁ ନିର୍ଦ୍ଦୟ ଭାବରେ ହତ୍ୟା କରିବାକୁ ଲାଗିଲେ । ସେମାନେ ହତାଶ ହୋଇ ବିଶୃଙ୍ଖଳ ଭାବରେ ଏଣେ ତେଣେ ପଳାୟନ କରିବାକୁ ଲାଗିଲେ । ଯେଉଁମାନେ ଶରଣ ପଶିଲେ ସେମାନେ ରକ୍ଷା

GPNanda Colln., Digitized by srujanika@gmail.com

ପାଇଲେ । କତିପୟ ମୋଗଲ ଜୀବନ ରକ୍ଷା ପାଇଁ ଅତୀବ କୌତୁକଜନକ ଉପାୟ ଅବଲମ୍ବନ କରିଥିଲେ । ସେମାନେ ରାଜପୁତ-କୋପାନଳରୁ ରକ୍ଷା ପାଇବା ଲାଗି ଆପଣାକୁ ହିନ୍ଦୁ ବୋଲି ପରିଚୟ ଦେଇ 'ସୀତା-ରାମ' ଓ 'ହରି-ଗୋବିନ୍ଦ' ଜପ ଆରମ୍ଭ କଲେ ଏବଂ ଦିନବେଳେ ଏହି ନାମ ଜପଦ୍ୱାରା ଭିକ୍ଷା ସଂଗ୍ରହ କରି ରାତ୍ରିରେ ପଳାୟନ କରିବାକୁ ଲାଗିଲେ । କେହି କେହି ଆପଣାର ଶ୍ମଶ୍ରୁ କ୍ଷୌର କରିଦେବା ନିମିତ୍ତ କ୍ଷୌରକାରମାନଙ୍କୁ ମୁଠା ମୁଠା ସ୍ୱର୍ଣ୍ଣମୁଦ୍ରା ଦେଇଥିଲେ । ମୋଗଲମାନେ ସମସ୍ତେ ଭୟବିହ୍ୱଳ ଚିତ୍ତରେ ମାରବାର ରାଜ୍ୟ ଛାଡ଼ି ପଳାୟନ କଲେ । ଏହିପରି ମାରବାର ରାଜ୍ୟ ଶତ୍ରୁ କବଳରୁ ଉଦ୍ଧାର ଲାଭ କଲା ।

ତତ୍‌ପରେ ଗଙ୍ଗାଜଳ ଓ ତୁଳସୀପତ୍ର ଦ୍ୱାରା ଯୋଧପୁର ରାଜଭବନ ଧୌତ ହୋଇ ପବିତ୍ରୀକୃତ ହେଲା ଉତ୍ତାରେ ଅଜିତ ସିଂହ ଯୋଧପୁର ସିଂହାସନରେ ଅଭିଷିକ୍ତ ହେଲେ ।

ଅଜିତଙ୍କ ଜନ୍ମଠାରୁ ତାଙ୍କର ସିଂହାସନାରୋହଣ ପର୍ଯ୍ୟନ୍ତ ଏହି ଷଡ଼-ବିଂଶତି ବର୍ଷ ତାଙ୍କ ଜୀବନରେ ଓ ମାରବାରର ଇତିହାସରେ ଅତୀବ ଗୌରବାନ୍ୱିତ ସମୟ, କାରଣ ଏହି ସମୟରେ ରାଠୋର ଚରିତ୍ରର ମହତ୍ତ୍ୱ ଅଗଣିତ ଘଟଣାବଳୀରେ ଅତ୍ୟୁଜ୍ଜ୍ୱଳରୂପେ ପ୍ରକଟିତ ହୋଇଥିଲା । ଏହି ସମ୍ପର୍କରେ ନିରପେକ୍ଷ, ହୃଦୟବାନ୍ ଐତିହାସିକ ଶ୍ରୀଯୁକ୍ତ ଟଡ (Tod) ଯେଉଁ ତେଜସ୍ୱୀ ମନ୍ତବ୍ୟମାନ ପ୍ରକାଶ କରିଅଛନ୍ତି, ତାହା ପ୍ରତ୍ୟେକ ଉନ୍ନତି ପ୍ରୟାସୀ ହିନ୍ଦୁର ପଠନୀୟ ଓ ଚିରସ୍ମରଣୀୟ । ସେଥିରୁ ପଦେଅଧେ ଏଠାରେ ଉଦ୍ଧାର ନକରି ରହିପାରିଲି ନାହିଁ । 'In vain might we search the annals of any other nation for such inflexible devotion as marked the Rathore character through this period of strife during which × × × "hardly a chieftain died on his pallet." Let those, who deem the Hindu warrior void of Patriotism, read the rule chronicle of this thirty years' war, let them compare it with that of any other country and do just to the magnanimous Rajput × × ×. What a splendid example is the heroic Doorgadas of all that constitutes the glory of the Rajput."

ତତ୍‌ପରେ ରାଜା ଅଜିତ ସିଂହ ସୁଚାରୁ ରୂପେ ରାଜ୍ୟ ଶାସନ କରିବାକୁ ଲାଗିଲେ । ସ୍ୱଜାତି ଓ ସ୍ୱଧର୍ମର ଗୌରବ ରକ୍ଷା ଓ ଉନ୍ନତି ସାଧନ ତାଙ୍କ ଜୀବନର ପ୍ରଧାନ ଲକ୍ଷ୍ୟ ଥିଲା । ତାଙ୍କ ଶାସନକାଳରେ ମାରବାରର ପ୍ରଜାମାନେ ପରମ ସୁଖରେ କାଳାତିପାତ କରୁଥିବାର ଅନୁମାନ ହୁଏ ।

ଆଓରଙ୍ଗଜେବଙ୍କ ଉତ୍ତରାଧିକାରୀମାନେ ସାଧାରଣତଃ ଦୁର୍ବଳ ଓ ବିଳାସ ପ୍ରିୟ ଥିଲେ । ଏହି କାରଣରୁ ଦିଲ୍ଲୀ-ରାଜ-ଦରବାରର ବିଶେଷ ବିଶେଷ ବ୍ୟକ୍ତି ସେମାନେ ସମୟରେ ଅତୀବ କ୍ଷମତାଶାଳୀ ହୋଇ ଉଠୁଥିଲେ ଓ ସାମ୍ରାଜ୍ୟକୁ ଭୟଙ୍କର ରାଜନୈତିକ ଆବର୍ତ୍ତ ମଧ୍ୟରେ ନିକ୍ଷେପ କରୁଥିଲେ ।

GPNanda Colln., Digitized by srujanika@gmail.com

ମାରବାର ରାଜ୍ୟ ପ୍ରତି ଦିଲ୍ଲୀ—ସମ୍ରାଟଙ୍କ ଆକ୍ରୋଶ ଏକ ପ୍ରକାର ପରମ୍ପରାଗତ । ଏହି କାରଣରୁ ଅଜିତ ସିଂହଙ୍କୁ ତଦାନୀନ୍ତନ ମହାଜଟିଳ ରାଜନୈତିକ ଚକ୍ର ମଧ୍ୟରେ ପ୍ରବେଶ କରିବାକୁ ପଡ଼ିଥିଲା । କିନ୍ତୁ ସେ ସର୍ବଦା ପିତା ଯଶୋବନ୍ତଙ୍କ ପଦାଙ୍କ ଅନୁସରଣ କରି ଓ ଆପଣାର ବାଲ୍ୟନିର୍ଯ୍ୟାତନ ସ୍ମୃତି ହୃଦୟେ ଜାଗ୍ରତ ରଖି କାର୍ଯ୍ୟ କରୁଥିଲେ । ସେ ଗୁଜରାଟର ରାଜପ୍ରତିନିଧିତ୍ୱ ପ୍ରାପ୍ତ ହୋଇଥିଲେ ଏବଂ କ୍ରମଶଃ ଦିଲ୍ଲୀ ରାଜଦରବାରରେ ଜଣେ ପ୍ରଭୂତ କ୍ଷମତାଶାଳୀ ଓ ପ୍ରତିପତ୍ତିଶାଳୀ ରାଜପୁରୁଷ ହୋଇ ଉଠିଥିଲେ । ଏପରି କି ସେ ଏକପ୍ରକାର king-maker ହୋଇ ଉଠିଥିଲେ—ଅର୍ଥାତ୍ ସୟେଦ୍‌ମାନଙ୍କ ସହିତ ମିଳିତ ହୋଇ ସ୍ୱେଚ୍ଛାନୁସାରେ ଏକ ସମ୍ରାଟ ପରେ ଅନ୍ୟ ଏକ ସମ୍ରାଟଙ୍କୁ ଦିଲ୍ଲୀ-ସିଂହାସନରେ ସ୍ଥାପନ କରିପାରୁଥିଲେ । ରାଜ୍ୟ ଭ୍ରଷ୍ଟ ଅମ୍ବରପତି ଜୟସିଂହଙ୍କୁ ମଧ୍ୟ ସେ ଅମ୍ବରର ରାଜସିଂହାସନରେ ପୁନଃ ପ୍ରତିଷ୍ଠିତ କରିଥିଲେ । ତାଙ୍କ ରାଜତ୍ୱ କାଳ ମଧ୍ୟରେ ମାରବାର ରାଜ୍ୟରେ ହିନ୍ଦୁ ଧର୍ମର ଜୟବୈଜୟନ୍ତୀ ଉଡ୍‌ଡୀନ ହୋଇଥିଲା ଓ ମୁସଲମାନ ଧର୍ମ ସେଠାରୁ ଏକାବେଳକେ ତିରୋହିତ ହୋଇଥିଲା । କର୍ମବୀର ଅଜିତ ସିଂହ ଏହିପରି ସ୍ୱରାଜ୍ୟକୁ ନାନା ବିଭାଗରେ ଉନ୍ନତି-ମଞ୍ଚରେ ସ୍ଥାପନ କରି ବିଂଶତି ବର୍ଷ ବ୍ୟାପୀ ରାଜତ୍ୱ ପରେ ଷଟ୍‌ଚ-ତ୍ୱାରିଂଶ ବୟସରେ ଇହଲୀଳା ସମ୍ବରଣ କଲେ ।

ଅଜିତ ସିଂହଙ୍କ ରାଜତ୍ୱକାଳ ସର୍ବଥା ଘଟଣାପୂର୍ଣ୍ଣ ଥିଲେ ହେଁ କେବଳ ଦୁଇଗୋଟି ଘଟନା ଇତିହାସରେ ପ୍ରସିଦ୍ଧି ଲାଭ କରିବାର ଯୋଗ୍ୟ । ପ୍ରଥମତଃ ସମ୍ରାଟ୍ ଫିରୋକ୍‌ସିରଙ୍କ ସହିତ ତାଙ୍କ କନ୍ୟାର ପରିଣୟ ଓ ଦ୍ୱିତୀୟତଃ ତାଙ୍କର ନିଜ ପୁତ୍ର ହସ୍ତରେ ଆପଣାର ପ୍ରାଣହତ୍ୟା । ପ୍ରଥମୋକ୍ତ ଘଟନାଟି ଏତେ ପ୍ରସିଦ୍ଧ ହେବାର କାରଣ ଏହି ଯେ, ତହିଁ ସମ୍ପର୍କରେ ଆଉ ଗୋଟିଏ ଘଟନା ଘଟିଥିଲା, ଯାହାକି ଭାରତର ଭାଗ୍ୟ ସମ୍ପୂର୍ଣ୍ଣ ପରିବର୍ତ୍ତନ ଘଟାଇଅଛି; କାରଣ ଏହାହିଁ ଭାରତରେ ବ୍ରିଟିଶ-କ୍ଷମତା-ବୃଦ୍ଧିର ନିଦାନ । ଅଜିତଙ୍କ କନ୍ୟା ସହିତ ଫିରୋକ୍‌ସିରଙ୍କ ବିବାହ ସମ୍ପାଦିତ ହେବାର କିୟତ୍‌କାଳ ପୂର୍ବେ ସମ୍ରାଟଙ୍କ ପୃଷ୍ଠ ଦେଶରେ ଗୋଟିଏ ସାଂଘାତିକ ବ୍ରଣ ହେବାରୁ ଅସ୍ତ୍ରଚିକିତ୍ସାର ପ୍ରୟୋଜନ ହୋଇଥିଲା । ଦିଲ୍ଲୀର ଚିକିତ୍ସକ ମଣ୍ଡଳୀଙ୍କର ସକଳ ଚେଷ୍ଟା ବ୍ୟର୍ଥ ହେଲା । ପରିଶେଷରେ ସମସ୍ତେ ନିରାଶ ହୋଇପଡ଼ିଲେ । ଏହି ସମୟରେ ସୌରାଷ୍ଟ୍ର ନଗରୀସ୍ଥ (ସୁରଟ) ବ୍ରିଟିଶ ବଣିକ୍ ମଣ୍ଡଳୀ ପ୍ରେରିତ କତିପୟ ଇୟୁରୋପୀୟ ଦୂତ ଦିଲ୍ଲୀରେ ବାସ କରୁଥିଲେ । ସେମାନଙ୍କ ମଧ୍ୟରେ ହ୍ୟାମିଲ୍‌ଟନ ନାମ୍ନୀ ଜନୈକ ଅସ୍ତ୍ରଚିକିତ୍ସକ ଥିଲେ । ସମ୍ରାଟ ଫିରୋକ୍‌ସିର ଶେଷ ପରୀକ୍ଷା ସ୍ୱରୂପ ଉକ୍ତ ଡାକ୍ତର ମହାଶୟଙ୍କୁ ଡକାଇବାରୁ ସେ ସମ୍ରାଟଙ୍କୁ ରୋଗମୁକ୍ତ କରିଦେଲେ । ତତ୍‌ପରେ ସମ୍ରାଟ ଓ ରାଜପୁତ କନ୍ୟାଙ୍କର ପରିଣୟୋତ୍ସବ ମହାସମାରୋହରେ ସମ୍ପାଦିତ ହେଲା ଓ ସମ୍ରାଟ୍ ପରମ ପରିତୋଷ ଲାଭ କରି ଡାକ୍ତର ହ୍ୟାମିଲ୍-ଟନଙ୍କୁ ପୁରସ୍କାର ଦେବାକୁ ଇଚ୍ଛା ପ୍ରକାଶ କଲେ । ସ୍ୱଜାତିବତ୍ସଳ ଓ ଜାତୀୟ ଜୀବନର ସଞ୍ଜୀବନୀମନ୍ତ୍ର ଦୀକ୍ଷିତ ନିର୍ଲୋଭ ପ୍ରକୃତି ହ୍ୟାମିଲଟନ୍ ନିଜ ସକାଶେ କୌଣସି ପ୍ରାର୍ଥନା ନକରି ସୁରଟସ୍ଥ ବ୍ରିଟିଶବଣିକମଣ୍ଡଳୀଙ୍କ ନିମିତ୍ତ ସୁପ୍ରଶସ୍ତ ଭୂମିଖଣ୍ଡ ଓ ସୁବିସ୍ତୃତ ବାଣିଜ୍ୟାଧିକାରମାନ ଲାଭ କରିଥିଲେ । ଦୂତ ମଣ୍ଡଳୀଙ୍କର ଏହି ଉଦ୍ଦେଶ୍ୟଗୁଡ଼ିକ ଉକ୍ତ ଘଟନା ନଘଟିବା ପର୍ଯ୍ୟନ୍ତ ସିଦ୍ଧ ହୋଇ-ନଥିଲା । କିନ୍ତୁ ବର୍ତ୍ତମାନ ଚିକିତ୍ସା ବିଦ୍ୟାବଳରେ ଅକ୍ଳେଶରେ ସେଗୁଡ଼ିକ ସଂପାଧିତ ହେଲା, କାରଣ, "ପଦଂ ହି ସର୍ବତ୍ର ଗୁଣୈ ର୍ନିଧୀୟତେ ।" ଆହୁରି

GPNanda Colln., Digitized by srujanika@gmail.com

ମଧ୍ୟ ଭାରତରେ ବ୍ରିଟିଶ କ୍ଷମତା ଓ ବ୍ରିଟିଶ ଅଧିକାରର ମୂଳରେ ପଡି ପ୍ରାଣରକ୍ଷା ରୂପ ଏହି ଅକ୍ଷୟ ସତ୍‌କାର୍ଯ୍ୟ ବିଦ୍ୟମାନ ଥିବାରୁ ତାହାର ଉତ୍ତରୋତ୍ତର ଏପରି ଉନ୍ନତି ହେଉଅଛି ବୋଲି ଅନୁମାନ ହୁଏ । "ଯତୋଧର୍ମ ସ୍ତତୋଜୟଃ ।"

ଅଜିତ ସିଂହଙ୍କ ଜୀବନର ଅନ୍ତିମ ଘଟନା—ସ୍ୱପୁତ୍ର ହସ୍ତରେ ନିଜ ପ୍ରାଣବିନାଶ—ଅତୀବ ଦୁଃଖାବହ । ଏହି ଦୁଃଖାବହ ଘଟନା ଯଥାର୍ଥରୂପେ ବର୍ଣ୍ଣନା କରିବାପାଇଁ ଜଣେ କାଳିଦାସ ବା ସେକସ୍‌ପିୟର ତୁଲ୍ୟ ସୁଦକ୍ଷ ନାଟକ ପ୍ରଣେତା ଆବଶ୍ୟକ । ପୁତ୍ରଦ୍ୱାରା ଅଜିତ ସିଂହଙ୍କ ତୁଲ୍ୟ ଅଶେଷ ସଦ୍‌ଗୁଣାନ୍ୱିତ ପିତାଙ୍କର ପ୍ରାଣବିନାଶ—ଜଟିଳ ରାଜନୈତିକ ଚକ୍ରର କରାଳ ଆବର୍ତ୍ତନର ଅବଶ୍ୟମ୍ଭାବୀ ବିଷମୟ ଫଳରାଶି ମଧ୍ୟରୁ ଗୋଟିଏ ବୋଲି ପ୍ରତିଭାତ ହୁଏ ଏବଂ ଯେତେବେଳେ ଏହି ଘଟନା ମଧ୍ୟରେ ସେହି ସମୟର ବିଶେଷ ଭାବ (Spirit of the time) ସ୍ପଷ୍ଟ ଭାବରେ ପ୍ରତିବିମ୍ବିତ ହେବାର ଦେଖାଯାଏ, ତେତେବେଳେ ମନେହୁଏ ଯେବେ ଏହି ଐତିହାସିକ ଘଟନାଟି ସୁଯୋଗ୍ୟ ନାଟକୀୟ କବିଙ୍କର ଲେଖନୀର ବିଷୟୀଭୂତ ହୋଇଥାନ୍ତା, ତେବେ ଏହା Julious Ceasar ବା Coriolanus ତୁଲ୍ୟ ଦୁଃଖାବହ ନାଟକଠାରୁ (Tragedies) କୌଣସି ଅଂଶରେ ନ୍ୟୂନ ହୋଇନଥାନ୍ତା । Jeulious Ceasar ନାମକ ନାଟକରେ ମହାକବି ସେକସ୍‌ପିୟାର ଦେଖାଇଅଛନ୍ତି ଯେ ସିଜାରଙ୍କ ଭୌତିକ ଶରୀର ନଷ୍ଟହୋଇଥିଲେ ସୁଦ୍ଧା ସେହି ଯୁଗର ଭାବ (Spirit of the time) Ceasarim ଅର୍ଥାତ୍ ପ୍ରଜାତନ୍ତ୍ର ଶାସନ ପରିବର୍ତ୍ତେ ରାଜତନ୍ତ୍ର ଶାସନ ପ୍ରତିଷ୍ଠିତ କରିବାର ଆକାଂକ୍ଷା ବିନିଷ୍ଟ ହୋଇ ନଥିଲା । ତାହା ଅଚିରେ ରୋମରେ Republic ପରିବର୍ତ୍ତେ Empire ସ୍ଥାପନ କରିଥିଲା—ଅର୍ଥାତ୍ ଅସାଧାରଣ ଶକ୍ତି ସମ୍ପନ୍ନ ବ୍ୟକ୍ତିମାନେ ନିଜ ନିଜ ଚିନ୍ତାଶକ୍ତି ଓ କାର୍ଯ୍ୟକଳାପର ପ୍ରଭାବକୁ ଉପସ୍ଥିତ ସମୟ ମଧ୍ୟରେ ପ୍ରବିଷ୍ଟ କରାଇ ଦେଇ ସେ ଯୁଗର ଗୋଟିଏ ବିଶେଷ ଭାବ (Spirit of the time) ସୃଷ୍ଟି କରି ଦେଇପାରନ୍ତି ଏବଂ ତଦାନୀନ୍ତନ ସାଧାରଣ ଲୋକମାନଙ୍କର କାର୍ଯ୍ୟକଳାପ ଓ ଗତିବିଧି ସେହି ଭାବର ଅନୁସାରୀ ହୋଇଥାଏ । ମନ୍ଦ ଦିଗରେ ହେଲେହେଁ ଆଓରଙ୍ଗଜେବ ଜଣେ ଅସାଧାରଣ ପୁରୁଷ ଥିଲେ, ଏଥିରେ ସନ୍ଦେହ ନାହିଁ । ତାଙ୍କ ସମୟର ବିଶେଷ ଭାବ (Spirit of the time) ତାଙ୍କର କାର୍ଯ୍ୟକଳାପାନୁଯାୟୀ ହୋଇଥିଲା । ପିତୃଦ୍ରୋହୀ, କ୍ଷମତାପ୍ରିୟତା (Love of Power), ନୃଶଂସତା ଇତ୍ୟାଦି ଆଓରଙ୍ଗଜେବଙ୍କ ବିଶେଷ ଗୁଣଗୁଡିକ ସେହି ସମୟର ପ୍ରଧାନ ଲକ୍ଷଣ ଥିଲା ଓ ତଦାନୀନ୍ତନ ମୋଗଲ ଚରିତ୍ରକୁ ଏକାବେଳକେ ବିଷାକ୍ତ କରି ପକାଇଥିଲା । ଅନୁମାନ ହୁଏ, ଅଜିତଙ୍କ ପୁତ୍ରଦ୍ୱୟ ଏହି ଯୁଗ-ପ୍ରଭାବରୁ ଓ ମୋଗଲମାନଙ୍କ ସଂସ୍ପର୍ଶ ଦୋଷରୁ ପିତୃହତ୍ୟାରୂପ ଲୋମହର୍ଷଣକାରୀ ମହାପାପ ଅନୁଷ୍ଠାନ କରିବାକୁ କ୍ଷମ ହୋଇଥିଲେ । ନିମ୍ନଲିଖିତ ବିବରଣୀରୁ ଏହି ଉକ୍ତିର ସତ୍ୟତା ପ୍ରମାଣିତ ହେବ ।

ଏକଦା ରଜା ଅଜିତ ସିଂହ ସ୍ୱୀୟ ପୁତ୍ର ଅଭୟ ସିଂହଙ୍କ ସହିତ ଆପଣାର ଜାମାତା ସମ୍ରାଟ ଫିରୋକସିରଙ୍କ ରାଜତ୍ୱକାଳରେ ଦିଲ୍ଲୀ ରାଜଧାନୀରେ ବାସ କରୁଥିଲେ । ଏହି ସମୟରେ ଅବ୍‌ଦୁଲ୍ଲା ଖାଁ ଓ ହୋସେନ୍ ଅଲି ନାମକ ଭ୍ରାତୃଦ୍ୱୟ ଦିଲ୍ଲୀ ରାଜଦରବାରରେ ସର୍ବେସର୍ବା ଥିଲେ । ଏହି ଭ୍ରାତୃଦ୍ୱୟ ସୟେଦ

GPNanda Colln., Digitized by srujanika@gmail.com

ନାମରେ ବିଖ୍ୟାତ ଥିଲେ । ଏହି ସୟେଦମାନେ କୁଟିଳ ନୀତି ପରତନ୍ତ୍ର ହୋଇ ଫିରୋକସିରଙ୍କୁ ସିଂହାସନଚ୍ୟୁତ କଲେ ଓ ଆପଣାର ଅଧୀନସ୍ଥ ମହମ୍ମଦ ଶାହ ନାମକ ଜଣେ ବ୍ୟକ୍ତିକୁ ଦିଲ୍ଲୀ ସିଂହାସନରେ ବସାଇଲେ । ରାଜା ଅଜିତ ସିଂହ ସୟେଦ ମାନଙ୍କର ଷଡ଼ଯନ୍ତ୍ର ନୀଚ କାର୍ଯ୍ୟକଳାପ ଅନୁମୋଦନ ନକରି ସ୍ୱୀୟ କନ୍ୟା ଭୂତପୂର୍ବ ସମ୍ରାଜ୍ଞୀଙ୍କ ସମଭିବ୍ୟାହାରରେ ସ୍ୱରାଜ୍ୟକୁ ପ୍ରସ୍ଥାନ କଲେ; କିନ୍ତୁ ଜ୍ୟେଷ୍ଠ ତନୟ ଅଭୟ ସିଂହଙ୍କୁ ଦିଲ୍ଲୀ ଦରବାରରେ ଛାଡି ଯାଇଥିଲେ । ସୟେଦମାନେ ଅଜିତଙ୍କ ପ୍ରତି ଅତୀବ କ୍ରୁଦ୍ଧ ହୋଇ ମାରବାର ରାଜ୍ୟର ଧ୍ୱଂସ ସାଧନ କରିବାକୁ ଭୟ ଦେଖାଇଲେ । ପୁଣି ଏଣେ ଅଭୟ ସିଂହଙ୍କୁ କହିଲେ, "ତୁମ୍ଭେ ଯେବେ ପିତାଙ୍କୁ ରାଜ୍ୟଚ୍ୟୁତ କରି ହତ୍ୟା କରିପାରିବ, ତେବେ ତୁମ୍ଭେ ରାଜା ହେବ ଓ ତୁମ୍ଭର ରାଜ୍ୟ ରକ୍ଷା ପାଇବ, ନତୁବା ନୁହେଁ ।" ଅଭୟ ସିଂହ ଏହା ଶୁଣି ପ୍ରଥମେ ଅସ୍ୱୀକୃତ ବା ଇତସ୍ତତଃ ହେବାରୁ ସେମାନେ ତାଙ୍କୁ ପଚାରିଲେ, "ମା ବାପ୍‌କା ଶାକା, ୟା ଜମିନ୍‌କା ଶାକା ?"—ତୁମ୍ଭେ ପିତାମାତାର ଶାଖା, ନା ଭୂମିର ଶାଖା ? ଏହିପରି ନାନା ପ୍ରକାର ପ୍ରରୋଚନା ଓ ପ୍ରଲୋଭନରେ ପଡ଼ି ଅଭୟ ସିଂହ ସୟେଦମାନଙ୍କ ନୃଶଂସ ପ୍ରସ୍ତାବରେ ସମ୍ମତ ହେଲେ : ଅଜିତ ସିଂହଙ୍କ ବାରଗୋଟି ପୁତ୍ର ମଧ୍ୟରେ ଅଭୟ ସିଂହ ସର୍ବ ଜ୍ୟେଷ୍ଠ ଓ ଭକ୍ତସିଂହ କନୀୟାନ୍ ଥିଲେ । ଅଭୟ ଦିଲ୍ଲୀରେ ଥିବା ସମୟରେ ଭକ୍ତ ପିତାଙ୍କ ସହିତ ବାସ କରୁଥିଲେ । ଅଭୟ ଭକ୍ତ ପାଖକୁ ଲେଖିଲେ, ତୁମ୍ଭେ ଯେବେ ପିତାଙ୍କୁ ହତ୍ୟା କରପାରିବ, ତେବେ ପଞ୍ଚଶତ ପଞ୍ଚଷଷ୍ଠି ନଗରବିଶିଷ୍ଟ ନାଗୋର ରାଜ୍ୟର 'ଏକାଙ୍ଗ ଚକ୍ରବର୍ତ୍ତୀତ୍ୱ" (independent sovereignty) ପୁରସ୍କାର ସ୍ୱରୂପ ପାଇବ ।" ମାମର ଭକ୍ତ ସିଂହ ଏହି କ୍ରୂର ପ୍ରସ୍ତାବକୁ ଘୃଣା କରିବା ତେଣିକି ଥାଉ, ସ୍ୱହସ୍ତରେ ଯେପରି ଅବସ୍ଥା ମଧ୍ୟରେ ଓ ଯେପରି ନିର୍ମମ ଭାବରେ ଏହି ଲୋମହର୍ଷଣକାରୀ କାଣ୍ଡ ସମ୍ପାଦନ କଲା, ତାହାର ପଟାନ୍ତର ନାହିଁ । ଭକ୍ତ ସିଂହ ଅତୀବ ଉଦ୍ଧତ, ଗର୍ବିତ, ଅବିମୃଷ୍ୟକାରୀ ଓ ନିରନ୍ତର କାର୍ଯ୍ୟ ପିପାସୁ (With a perpetual thirst for action) ଥିବାରୁ ତାଙ୍କ ମାତା ତାଙ୍କୁ ସର୍ବଦା ଭୟ କରୁଥିଲେ ଓ ଆପଣାର ସ୍ୱାମୀଙ୍କୁ ସତର୍କ କରି କହୁଥିଲେ "ଆପଣ ଗୋଧୂଳି ସମୟରେ ବା ଏକାକୀ ଥିବା ସମୟରେ ଭକ୍ତକୁ ଆପଣଙ୍କ ନିକଟକୁ ଯିବାକୁ ଦେବେ ନାହିଁ ।" କିନ୍ତୁ ପ୍ରଭୂତ ବଳଶାଳୀ, ସାହସୀ ରାଜା ଅଜିତ ରାଣୀଙ୍କର ଭୟପ୍ରଣୋଦିତ ସତର୍କ ବାଣୀକୁ ଉପହାସରେ ଉଡ଼ାଇ ଦେଇ କହିଲେ "Is it not my child ? Besides, a slap on the face from me would annihilate the stripling.,'—ସେ କ'ଣ ମୋର ପୁଅ ନୁହେଁ ? ପୁଣି ଟୋକା ଟିକକ, ଗୋଟାଏ ଚାପୁଡ଼ାକୁ ନାହିଁ ।

କୁଳପାଂଶୁଳ ଭକ୍ତ ସିଂହ ଅଭୟ ସିଂହର ପତ୍ରପ୍ରାପ୍ତି ଉତ୍ତାରେ ପିତାଙ୍କ-ଠାରୁ ବିଦାୟ ଗ୍ରହଣ କରି ମାତାପିତାଙ୍କର ଶୟନ ପ୍ରକୋଷ୍ଠର ସନ୍ନିହିତ ଗୋଟିଏ ପ୍ରକୋଷ୍ଠରେ ଆପଣାକୁ ଲୁକ୍କାୟିତ ରଖିଲା । ନୀରବ ନିସ୍ତବ୍ଧ ନିଶୀଥ କାଳରେ ଘାତୁକ ଭକ୍ତ ସିଂହ ଧୀରେ ଧୀରେ ସେମାନଙ୍କ ଶଯ୍ୟା ନିକଟରେ ପ୍ରବିଷ୍ଟ ହେଲା । ତତ୍‌ପରେ ଅଜିତଙ୍କ ଅସ୍ତ୍ରଶସ୍ତ୍ର ମଧ୍ୟରୁ ଗୋଟାଏ ଶାଣିତ କୃପାଣ ଗ୍ରହଣ କରି ଅମ୍ଳାନ ବଦନରେ ପିତାଙ୍କର ଶିରଚ୍ଛେଦନ କାର୍ଯ୍ୟରେ 'ପ୍ରବୃତ୍ତ ହେଲା । ସ୍ୱାମୀଦେହ-ରକ୍ତରେ ଆପଣାର ବକ୍ଷସ୍ଥଳ ସିକ୍ତ ହେବାରୁ ରାଣୀ ଜାଗ୍ରତ ହୋଇ ଉଠିଲେ । ତାଙ୍କର ଯେଉଁ ବିଶ୍ୱସ୍ତ ରାଜପୁତ ମାନେ ସନ୍ନିହିତ ପ୍ରକୋଷ୍ଠମାନଙ୍କରେ ଶୟନ କରିଥିଲେ, ସେମାନେ ରାଣୀଙ୍କର

GPNanda Colln., Digitized by srujanika@gmail.com

ଚିତ୍କାରରେ ଜାଗରିତ ହୋଇ ଅଜିତଙ୍କ ପ୍ରକୋଷ୍ଠ ମଧ୍ୟରେ ହଠାତ୍ ପ୍ରବିଷ୍ଟ ହେଲେ ଓ ସେହି ଭୀଷଣ କାଣ୍ଡ ଅବଲୋକନ କରି ଚିତ୍କାର କରି ଉଠିଲେ "ରାଜଦ୍ରୋହ, ସର୍ବନାଶ ହୋଇଛି" । ପିତୃହନ୍ତା ଭକ୍ତ ଏପରି ଗୋଳମାଳ ଦେଖି ରାଜପ୍ରାସାଦର ଛାତ ଉପରକୁ ପଳାୟନ କରି ଦ୍ୱାରମାନ ବନ୍ଦ କରିଦେଲା । ଅନେକ ଚେଷ୍ଟା ସତ୍ତ୍ୱେ ସେହି ଦ୍ୱାରମାନ ଫିଟି ପାରିଲା ନାହିଁ । ପରିଶେଷରେ ପ୍ରଭାତ ସମୟରେ ଭକ୍ତ ଖଇର ପତ୍ରକୁ ପ୍ରାଙ୍ଗଣ ମଧ୍ୟରେ ନିକ୍ଷେପ କରି ଚିତ୍କାର କଲା, "ଏହାହିଁ ମହାରାଜାଙ୍କ ପ୍ରାଣନାଶ କରିଅଛି, ମୁଁ ନୁହେଁ । "ଏହି ସମୟରେ ଏକପ୍ରକାର "କୋଳୁଆ ଭୟ" ଉପସ୍ଥିତ ହୋଇଥିଲା । ଏହି ଭୟଙ୍କର ଘଟନା ଉପଲକ୍ଷରେ ବହୁ ସତୀଦାହ ସଂଘଟିତ ହୋଇଥିଲା । ଏହି ଅସ୍ୱାଭାବିକ ରାଜହନ୍ତା ଓ ପିତୃହନ୍ତା ପୁତ୍ରଦ୍ୱୟଙ୍କ ଅଭାଗିନୀ ଜନନୀ ଏହି ହତଭାଗିନୀ ରମଣୀଦଳର ଅଗ୍ରଯାୟିନୀ ହୋଇଥିଲେ । ପୁଣି ଅଜିତ ପ୍ରଜାବର୍ଗର ଏତେଦୂର ପ୍ରିୟପାତ୍ର ଥିଲେ ଯେ, ସ୍ତ୍ରୀମାନଙ୍କ କଥା ତେଣିକି ଥାଉ; ପୁରୁଷମାନେ ସୁଦ୍ଧା ଆପଣା ଆପଣାକୁ ତାଙ୍କ ଚିତାଗ୍ନିରେ ବଳିଦାନ କରିଥିଲେ । ଏହି ଦୁଃଖାବହ ଘଟଣା ସମ୍ପର୍କରେ ଲିଖିତ ରାଜପୁତ କବିଙ୍କର ନିମ୍ନଲିଖିତ ସଂକ୍ଷିପ୍ତ ଉକ୍ତିଟି ଅତୀବ ହୃଦୟସ୍ପର୍ଶୀ ।

ଭକ୍ତ, ରକ୍ତ, ବୈରୀ  
କେମ୍ବି ମାରୁ ଅଜମଲ  
ହିନ୍ଦୁଆନିକା ସିକାରୁ,  
ତୁର୍କାନିକା ସଲ୍ ? (ଅଜିତଙ୍କ ଅନ୍ୟ ନାମ ଅଜମଲ ଏହା 'ଅଜେୟ ମଲ୍ଲ'ର ଅପଭ୍ରଂଶ ।

Oh Bhakta, in evil hour  
Why slew you Ajmal,  
The pillar of the Hindu  
The Lance of the Turk ?

ମହାପ୍ରାଣ ଅଜିତ ସିଂହଙ୍କ ବହୁ ଘଟଣାପୂର୍ଣ୍ଣ ଜୀବନର ପରିଣାମ ଈଦୃଶ ହୋଇଥିଲା । ଏହି ସମ୍ପର୍କରେ ସଦାଶୟ ଗୁଣଗ୍ରାହୀ ଟଡ ସାହେବଙ୍କ ଓଜସ୍ୱୀ ବଚନଗୁଡ଼ିକ ଏଠାରେ ଉଲ୍ଲେଖଯୋଗ୍ୟ ।

"Thus closed the career of one of the most distinguished princes whoever pressed the cushion ot Maroo, a career as full of incident as any life of equal duration. Born amidst the snews of Cabul, deprived at his birth of both parents, one from qrief, the other by suicidal custom saved from the Herodian cruelty of the king by the heroin of his chieves, versed among the rocks of Aboo or the intricacies of the Aravelli untill the day of danger pass, he issued for, still one infant, at the head of his brave clains to redeem the inheritants so iniquitously wrested from him.''

GPNanda Colln., Digitized by srujanika@gmail.com

ଏହି ଘଟଣା ପାଠ କଲାବେଳେ ବିରୋଧ ନିୟମାନୁସାରେ (By law of contrast) ପୁଣ୍ୟଶ୍ଳୋକ ମହାବୀର ରାମଚନ୍ଦ୍ରଙ୍କ କଥା ସ୍ମୃତି ପଥାରୂଢ଼ ହୁଏ । ଧର୍ମପ୍ରାଣ ଅମିତ ତେଜା ରାମଚନ୍ଦ୍ର ସତ୍ୟର ମହିମା ଏତେଦୂର ବୁଝିଥିଲେ ଯେ ପିତୃ ସତ୍ୟ ପାଳନ ରୂପକ ପବିତ୍ର କର୍ତ୍ତବ୍ୟ ସାଧନ ତୁଳନାରେ ସସାଗରା ଧରଣୀର ଏକାଂଶ ଚକ୍ରବର୍ତ୍ତୀକୁ ନିତାନ୍ତ ତୁଚ୍ଛ ଜ୍ଞାନ କରି ରାଜ୍ୟାଭିଷେକ ପୂର୍ବ ଦିବସରେ ବନଚାରୀ ହେବାକୁ ଅଣୁମାତ୍ର କୁଣ୍ଠାବୋଧ କରି ନଥିଲେ । ପୁଣି ତାଙ୍କର ଉପଯୁକ୍ତ ଅନୁଜ ଦ୍ୱୟ ଲକ୍ଷ୍ମଣ ଓ ଭରତଙ୍କ ଦେବୋପମ ନିଃସ୍ୱାର୍ଥ ଭ୍ରାତୃଭକ୍ତି ବିଷୟ ଭାବିଲେ କେଉଁ ପାଷାଣ ହୃଦୟ ଏକ ଅଦ୍ଭୁତ ପବିତ୍ର ରସରେ ଏକାବେଳକେ ଦ୍ରବୀଭୂତ ହୋଇ ନ ଯିବ । ଆହା କି ସ୍ୱର୍ଗୀୟ ଚିତ୍ର ।

କିନ୍ତୁ ଈଶ୍ୱରଙ୍କ ଧର୍ମରାଜ୍ୟରେ ଅଧର୍ମର ଜୟ କଦାପି ସମ୍ଭବପର ନୁହେଁ । ପାପର କ୍ଷଣିକ କୁହୁକ ପରେ ତହିଁର ଯେଉଁ ଭୟଙ୍କର ଶାସ୍ତିର ବ୍ୟବସ୍ଥା ହୁଏ ତହିଁରୁ ଅବ୍ୟାହତି ପାଇବା କାହାର ସାଧ୍ୟ ? ଏ ବିଷୟରେ ଟଡ୍ ସାହେବ ସ୍ୱୟଂ ସାକ୍ଷ ପ୍ରଦାନ କରୁଅଛନ୍ତି—"The parricidal murder of Agit is accounted the germ of destruction, which taking root in the social edifice of Marwar; ultimately rent it asunder. Bitter has been the fruit of this crime, even unto the third and fourth generation of his unnatural sons, whose issue, but for this crime, would, in all human probability, have been the most potent princes in India, able single handed to have stopped Marhatta aggrandisement."

ରାଜା ଅଜିତ ସିଂହଙ୍କ ଚରିତ୍ର, ତାଙ୍କ କାର୍ଯ୍ୟକଳାପରୁ ଅନୁମିତ ହୋଇପାରେ । ସେ ଯେପରି ବିଶାଳାକୃତି, ସେହିପରି ପ୍ରଜ୍ଞାବାନ୍ ଥିଲେ । ସାହସ ତାଙ୍କର ପୁରୁଷାନୁଗତ ଥିଲା । କେବଳ ଏକାଦଶ ବର୍ଷ ବୟସ ସମୟରେ ସେ ଏହି ପୁରୁଷାନୁଗତ ଗୁଣର ଉଜ୍ଜ୍ୱଳ୍ୟମାନ ପ୍ରମାଣ ପ୍ରଦାନ କରିଥିଲେ । ସେ ସର୍ବଦା ସ୍ୱୟଂ ସମଗ୍ର ରାଠୋର ସେନା'ର ସେନାପତିତ୍ୱ କରୁଥିଲେ । ତାଙ୍କ ବିଧାନକରେ ଯେତେବେଳେ ପୁରୁଷମାନେ ସୁଖ ଅମୃତଳୀ ପ୍ରଦାନ କରିଥିଲେ, ସେଥିରୁ ତାଙ୍କର ପ୍ରଜାବାତ୍ସଲ୍ୟ ଓ ରାଜଶାସନ କୁଶଳତା ଅନୁମେୟ । ପୁଣି ଫିରେକ୍‌ସିରଙ୍କଠାରୁ ମହମ୍ମଦ ଶାହଙ୍କ ରାଜତ୍ୱ ପର୍ଯ୍ୟନ୍ତ ଦିଲ୍ଲୀ ଦରବାରରେ ସକଳ କାର୍ଯ୍ୟରେ ହିଁ ପରିବର୍ତ୍ତନରେ ତାଙ୍କର ହସ୍ତ କୌଣସି ଭାବରେ ହେଲେ କାର୍ଯ୍ୟ କରୁଥିଲା । ଏଥିରୁ ତାଙ୍କର ରାଜନୀତିଜ୍ଞତାର ଉତ୍ତମ ପରିଚୟ ମିଳୁଅଛି । ସେ ସ୍ୱଭାବତଃ ଧର୍ମନିଷ୍ଠ ଓ ହିନ୍ଦୁ ଧର୍ମର ବିଶେଷ ପକ୍ଷପାତୀ ଥିଲେ । ଶୈଶବର ମୁନିବୃନ୍ଦନିଷେବିତ ଆରାବଲ୍ଲୀର ପବିତ୍ର ଭାବୋଦ୍ଦୀପକ ଅରଣ୍ୟାବଳୀ ମଧ୍ୟରେ ପାଳିତ ହୋଇଥିବାରୁ ସମ୍ଭବତଃ ଏହି ଧର୍ମଭାବ ତାଙ୍କ ଜୀବନରେ ବିଶେଷ ଭାବରେ ଦୃଢ଼ୀଭୂତ ହୋଇଥିଲା । ଏହି ସ୍ୱଧର୍ମନିଷ୍ଠତା ସଙ୍ଗେ ସଙ୍ଗେ ସ୍ୱଜାତି-ବତ୍ସଳତା ମଧ୍ୟ ତାଙ୍କ ଚରିତ୍ରରେ ବିଶେଷ ଭାବରେ ପରିସ୍ଫୁଟ ହୋଇଥିଲା ।

କିନ୍ତୁ ଏତେ ସଦ୍‌ଗୁଣ ସତ୍ତ୍ୱେ ଅଜିତଙ୍କ ଅନ୍ୟଥା ବିମଳ ଚରିତ୍ରରେ ଗୋଟିଏ ଦୂରପନେୟ କଳଙ୍କ ରହି ଯାଇଅଛି । ତାହା ତାଙ୍କର ରକ୍ଷକ,

GPNanda Colln., Digitized by srujanika@gmail.com

ଶିକ୍ଷକ ଓ ଉପଦେଷ୍ଟା (guide) ବୀରବର ଦୁର୍ଗାଦାସଙ୍କ ପ୍ରତି ଘୋର କୃତଘ୍ନତା ସେ ଦୁର୍ଗାଦାସଙ୍କୁ ସବଂଶରେ ମାରବାର ରାଜ୍ୟରୁ ନିର୍ବାସିତ କରିଥିଲେ ।

ଦୁର୍ଗାଦାସଙ୍କ ରାଜଭକ୍ତି ଓ ବିଶ୍ୱସ୍ତତାର ପଟାନ୍ତର ନାହିଁ । ଟଡ୍ ସାହେବ କହିଅଛନ୍ତି —' In the history of mankind, there is nothing to be found presenting a more brilliant picture of fidelity than that afforded by the Rathors claus in their devotion to their prince, from his birth unti he worked out his own and his country's salvation." ପୁନଶ୍ଚ "What a splendid example is the heroic' Doorgadas of all that constitutes the glory of the Rajput." ତାଙ୍କ ଜୀବନର ବିଷମ ବିଘ୍ନରାଶି ମଧ୍ୟରେ ସାହସ, ରାଜଭକ୍ତି, ସାଧୁତା ଓ ପ୍ରଜ୍ଞାବତ୍ତା ଉଜ୍ଜ୍ୱଳ ରୂପେ ପ୍ରକାଶିତ ହୋଇଥିଲା । ତାଙ୍କୁ ଯେଉଁ ପ୍ରଲୋଭନ ରାଶି ମଧ୍ୟରେ ପଡ଼ିବାକୁ ହୋଇଥିଲା, ତାହା ସେ ଭିନ୍ନ ଅନ୍ୟ ବ୍ୟକ୍ତି ପକ୍ଷରେ ଦମନ କରିବା କଠିନ । ଯୁବରାଜ ଆକବରଙ୍କୁ ସମର୍ପଣ କରିବା ନିମିତ୍ତ ଆଓରଙ୍ଗଜେବଙ୍କ ପ୍ରେରିତ ୪୦,୦୦୦ ସ୍ୱର୍ଣ୍ଣମୁଦ୍ରା ସେ କିପରି ମହତ୍ତ୍ୱ ସହକାରେ ପ୍ରତ୍ୟାଖ୍ୟାନ କରିଥିଲେ, ତାହା ଇତିପୂର୍ବେ କଥିତ ହୋଇଅଛି । ପୁଣି ଆଉ ଏକ ସମୟରେ ତାଙ୍କୁ "ପାଞ୍ଚ ହଜାର" (n unsub of five thousand) ଅର୍ଥାତ୍ ପାଞ୍ଚ ସହସ୍ର ସେନାର ନେତୃତ୍ୱ ପ୍ରଦାନ କରିବା ନିମିତ୍ତ ଆଓରଙ୍ଗଜେବ ଇଚ୍ଛା ପ୍ରକାଶ କରିଥିଲେ । ଏହା ଗ୍ରହଣ କରିଥିଲେ ସେ ଅଧୀନ ଅବସ୍ଥାରୁ (Vassal condition) ଉନ୍ନୀତ ହୋଇ ଧନ, ମାନ ଓ କ୍ଷମତାରେ ଆପଣାର ରାଜା ଅଜିତ ସିଂହଙ୍କ ସମକକ୍ଷ ହୋଇ ପାରିଥାନ୍ତେ । ମାତ୍ର ଇଦୃଶ ନୀଚ ସ୍ୱାର୍ଥପରତା ତାଙ୍କ ବୀର ହୃଦୟକୁ କ୍ଷଣମାତ୍ର ସ୍ପର୍ଶ କରି ନଥିଲା । ସେ "ଜଳକା ନୟନେ ଦିଶେ ଯା ଉଜ୍ଜ୍ୱଳ" ଏହି ଧନ, ମାନ ଓ କ୍ଷମତାର ମସ୍ତକରେ ପଦାଘାତ କରି ନିଜର ଦେଶ ଓ ନିଜର ରାଜା ଅଜିତଙ୍କର କାହିଁରେ ହିତ ଓ ଉନ୍ନତି ହେବ ସେଥିପାଇଁ ମନଃପ୍ରାଣ ନିଯୋଗ କରିଥିଲେ । ଦୁର୍ଗାଦାସ ଯେଉଁ ପୁରସ୍କାର କହିଥାନ୍ତେ, ଆଓରଙ୍ଗଜେବ ତାହା ଦେବାକୁ ପ୍ରସ୍ତୁତ ଥିଲେ, କିନ୍ତୁ ରାଜପୁତ କବିଙ୍କ ଭାଷାରେ ସେ 'ଅମୋଲକ' ଅର୍ଥାତ୍ ଅମୂଲ୍ୟ ଥିଲେ । ରାଜପୁତମାନେ ସାଧାରଣତଃ ଅତୀବ ପ୍ରତିହିଂସାପ୍ରିୟ ଥିଲେ । କିନ୍ତୁ ଦୁର୍ଗାଦାସ କେବେହେଁ ଏଥିଦ୍ୱାରା ସମ୍ମାନ ପଥରୁ ଭ୍ରଷ୍ଟ ହୋଇ ନଥିଲେ । ମୋଗଲମାନେ ତାଙ୍କ ଅଗ୍ରଜ ବୀର ସୋନିଂ ଦାସଙ୍କୁ ଅତ୍ୟନ୍ତ ନୃଶଂସ ଭାବରେ ହତ୍ୟା କରିଥିଲେ ସତ୍ୟ, କିନ୍ତୁ ଦୁର୍ଗାଦାସ ସେଥିରେ ବିଚଳିତ ନ ହୋଇ ଯୁଦ୍ଧ କାଳରେ କୌଣସି ଶତ୍ରୁ ସ୍ୱକ୍ଷମତାଧୀନ ହେଉଥିଲେ, ତାଙ୍କ ପ୍ରତି ସର୍ବଦା ସଦୟ ବ୍ୟବହାର କରୁଥିଲେ । ଯୁବରାଜ ଆକବରଙ୍କୁ ସେ ଯେପରି ଭାବରେ ରକ୍ଷା କରିଥିଲେ, ତାହାର ପଟାନ୍ତର କାହିଁ ? ପୁଣି ଆକବର ଆପଣାର ପରିବାରକୁ ଦୁର୍ଗାଦାସଙ୍କ ଆଶ୍ରୟରେ ରଖି ଯାଇଥିଲେ, ଏହି ପରିବାର ପ୍ରତି ଦୁର୍ଗାଦାସ ଯେପରି ସଦୟ, ସଭଯ ଓ ସସମ୍ମାନ ବ୍ୟବହାର କରିଥିଲେ, ତାହାର ବା ପଟାନ୍ତର କାହିଁ ? ମୋଗଲମାନେ ଇଦୃଶ ସ୍ଥଳମାନଙ୍କରେ କଣ କରିଥିଲେ ଓ କରିଥାନ୍ତେ "The virtue of the grand-daughter of Aurangzebe in the sanctuary of Droonara (Doorga's life on the looni) was in far better heeping than in the trebly-walled harem of Agra." "Eve .

GPNanda Colln., Digitized by srujanika@gmail.com

Aurang admired the honourable and distenguished treatment of his grand daughter." ପୁଣି ଅଜିତଙ୍କର ଶୈଶବ କାଳର ପ୍ରଥମ ଛଅ ବର୍ଷ ସମୟ ମଧ୍ୟରେ ସେ ତାଙ୍କ ଅବସ୍ଥାନ-ଗୁପ୍ତି ଯେପରି ଦକ୍ଷତା ସହକାରେ ରକ୍ଷା କରିଥିଲେ, ତହିଁରୁ ତାଙ୍କର ମାନସିକ ତେଜସ୍ୱିତା ଓ ଆପଣାର ବିଶ୍ୱାସୀ ସର୍ଦ୍ଦାରମାନଙ୍କ ଉପରେ ତାଙ୍କ ଅମୂଲ୍ୟ ଚରିତ୍ରର ଅମୋଘ ପ୍ରଭାବର ଉଜ୍ଜ୍ୱଳ ପ୍ରମାଣ ମିଳେ । ଦୁର୍ଗାଦାସ ଆପଣାର ସତ୍‌କାର୍ଯ୍ୟ ସକାଶେ ଅମରତ୍ୱ ଲାଭ କରି ଅଛନ୍ତି, ତାଙ୍କ ସ୍ମୃତି ପ୍ରତ୍ୟେକ ମାରବାରବାସୀର ହୃଦୟ-ମନ୍ଦିରରେ ସୁରକ୍ଷିତ, ତାଙ୍କ କାର୍ଯ୍ୟାବଳୀର ପ୍ରଶଂସା ମାରବାର କବିମାନେ ନିରନ୍ତର ଗାନ କରୁଅଛନ୍ତି, ଏବଂ ଶ୍ୱେତ ଘୋଟକାରୂଢ଼ ବୃଦ୍ଧ ଅଥଚ ଅମିତ ତେଜା ଦୁର୍ଗାଦାସଙ୍କର ଛବି ରାଜପୁତନାର ସଂଗୃହୀତ ଚିତ୍ରାବଳୀ ମଧ୍ୟରେ ସୁପରିଚିତ ।

ମୂଳରେ କହିବାକୁ ଗଲେ ଦୁର୍ଗାଦାସଙ୍କ ତୁଲ୍ୟ ନିଷ୍କାମ ଓ ନୀରବ କର୍ମବୀର ଜଗତର ଇତିହାସରେ ଅତି ଅଳ୍ପ ମିଳିବେ । କିନ୍ତୁ ଅଜିତ ସିଂହ କେବେ ଓ କାହିଁକି ଈଦୃଶ ସ୍ୱଦେଶ ଭକ୍ତ ପୁରୁଷ ପୁଙ୍ଗବଙ୍କ ପ୍ରତି ଏତାଦୃଶ ନିର୍ମମ ବ୍ୟବହାର କରିଥିଲେ, ତାହା ଠିକ୍ ରୂପେ ଜାଣିବାର ଉପାୟ ନାହିଁ । କିନ୍ତୁ କଥାଟା ଯେ ସତ୍ୟ, ତାହାର ଅକାଟ୍ୟ ପ୍ରମାଣ ରହିଅଛି (ଟଡ୍ ସାହେବ କହି ଅଛନ୍ତି, "The fact was incidentally discovered in searching a collection of original newspapers written from the camp of Bahadur Shah, in which it was stated, Doorgadas was encamped with his house hold retainers on the banks of the Peshola Lake at Qodipur and receiving daily five hundred rupees for his support from the Rana; who when called on by the king (Bahadur Shah) to surrender him magnanimously refused.) ମାତ୍ର ଅଜିତଙ୍କ ଦ୍ୱାରା ନିଗୃହୀତ ହେଲେହେଁ ଅଶେଷ ଗୁଣାକର ଦୁର୍ଗାଦାସ ଗୁଣଗ୍ରାହୀ ତଦାନୀନ୍ତନ ମିବାର ରାଣାଙ୍କ ଦ୍ୱାରା ଯେପରି ଆଦର ସହକାରେ ଗୃହୀତ ଓ ରକ୍ଷିତ ହୋଇଥିଲେ ତାହା ମହାପ୍ରାଣ ପ୍ରତାପଙ୍କ ବଂଶଧରଙ୍କ ଅନୁରୂପ ହୋଇଅଛି । ('ରାଜରୂପକ' ନାମକ ଗ୍ରନ୍ଥରେ ଅଜିତ ସିଂହଙ୍କ ଜୀବନ ବୃତ୍ତାନ୍ତର ଯେଉଁଠାରେ ତାଙ୍କର ହତ୍ୟାକାଣ୍ଡ ବିଷୟ ପଡ଼ନ୍ତା, ସେହିଠାରେ ଗୋଟିଏ ଅଲେଖା ପତ୍ର ଅଛି । ତହିଁର କାରଣ ଏହି ଯେ ଗ୍ରନ୍ଥକର୍ତ୍ତା ସେହି କ୍ରୂରକାଣ୍ଡ ବର୍ଣ୍ଣନ କରିପାରି ନଥି ସକାଶେ ଏହି ପତ୍ରଟିକୁ ଛାଡି ଦେଇଅଛନ୍ତି)

ଟଡ୍ ସାହେବ ଅଜିତଙ୍କ ଈଦୃଶ ଆଚରଣର ଦୁଇଗୋଟି କାରଣ ନିର୍ଦ୍ଦେଶ କରିଅଛନ୍ତି । ପ୍ରଥମତଃ ତଦାନୀନ୍ତନ କାଳ ପ୍ରଭାବ (spirit of the time) । ଦ୍ୱିତୀୟତଃ ତତ୍‌କାଳୀନ fedual system ଏହି କାରଣ ଦ୍ୱୟ ମଧ୍ୟରୁ ଶେଷୋକ୍ତଟିକୁ ସେ ବଳବତ୍ତର ବୋଧ କରିଥିବାର ଅନୁମାନ ହୁଏ । ବର୍ତ୍ତମାନ ତାଙ୍କରି ଓଜସ୍ୱିନୀ କଥାରେ ପ୍ରବନ୍ଧର ଉପସଂହାର କରଯାଉ ।

"Well may we repeat that the system of feudality is the parent of the most brilliant virtues and the darkest crimes ! Here a long life of uninterrupted fidelity could not preserve

GPNanda Colln., Digitized by srujanika@gmail.com

Doorga from the envenemed breath of slander or the serpent tooth of ingratetude and whilst the mind revolts at the crime (viz the parricidal murder of Ajit), which left a blank leaf in the choricle, it is involuntarily carried back to an act less atrocious, indeed, than one which in diminishing none of our horror for Abhye Sing, yet lessens our sympathy for the persecutor of Doorgadas".

GPNanda Colln., Digitized by srujanika@gmail.com

।

# ରଜା ଯଶୋବନ୍ତ ସିଂହ

ମହାତ୍ମା ଟଡ ସାହେବ କହିଅଛନ୍ତି '—

"The life of Jeswant Singh is ore of the most extraordinary in the annals of Rajputna, and a full nerrater of it would afford a perfect and deeply interesting picture of the history and mannars of the period." ଅର୍ଥାତ୍ ରଜପୁତାନାର ପୁରବୃତ୍ତରେ ଯଶୋବନ୍ତ ସିଂହଙ୍କ ଜୀବନ ଅତୀବ ଅସାଧାରଣ ଏବଂ ତହିଁର ସର୍ବାଙ୍ଗ ସୁନ୍ଦର ବିବରଣରୁ ତଦାନୀନ୍ତନ ଇତିହାସ ଓ ଆଚାରବ୍ୟବହାରର ଗୋଟିଏ ପୂର୍ଣ୍ଣାବୟବ ଓ ଅତ୍ୟନ୍ତ ଚିତ୍ତାକର୍ଷକ ଚିତ୍ର ମିଳିପାରିବ । ଅତଏବ ଏପରି ବୀର ପୁରୁଷଙ୍କ କିଞ୍ଚିତ ଆଲୋଚନା କରିବା ଶ୍ରେୟସ୍କର ହେବ ସନ୍ଦେହ ନାହିଁ ।

ଯଶୋବନ୍ତ ମାରବାର-ଅଧିପତି ରଠୋର ବଂଶୀୟ ଗଜ ସିଂହଙ୍କ ଦ୍ୱିତୀୟ ପୁତ୍ର ଥିଲେ । ତାଙ୍କ ମାତା ଜଣେ ମିବାର ରଜକନ୍ୟା ଥିଲେ । ଯଶୋବନ୍ତ ପିତାଙ୍କର ଦ୍ୱିତୀୟ ପୁତ୍ର ଥିଲେ ହେଁ ପ୍ରଧାନତଃ ଏହି କାରଣରୁ ଅର୍ଥାତ୍ ସେ ମିବାର ରଜକନ୍ୟାଙ୍କର ଗର୍ଭଜାତ ଥିବାରୁ ରଜ୍ୟର ଉତ୍ତରାଧିକାରୀ ହୋଇଥିଲେ କାରଣ ଟଡ୍ ସାହେବ କହନ୍ତି, "It is a proud triumph of virtue to record that whilst they (other princes of Rajasthan than that of Mewar) had risen to greatness from the Surrender of principle, as Mewar had decayed from her adherance to it, they should, even while basking in court favour, solicit, and that humbly, to be re-admitted to the honour of matrimonial intercourse (with the house of Mewar) —'to be Purified,' 'to be regenerated, 'to be made Rajputs. :— and that it was granted only on condition of their abjuring the contaminating practice which had disunited them for more than a century; with the additional stipulation that the issue of marriage with the house of Mewar should be heirs to those they entered; conditions which they decline of the empire prevented from being brokn." ଅର୍ଥାତ୍ ମିବାର ଭିନ୍ନ ଅନ୍ୟ ଯେଉଁ ରଜ୍ୟମାନଙ୍କର ଅଧିପତିମାନେ ମୋଗଲ ସମ୍ରାଟଙ୍କ ଅନୁଗ୍ରହ

GPNanda Colln., Digitized by srujanika@gmail.com

ଲାଭ କରି କ୍ଷଣିକ ପାର୍ଥିବ ସୁଖରେ ମୁଗ୍ଧ ଥିଲେ, ସେହିମାନେ ପୁଣି ଅନୁତପ୍ତ ହୃଦୟରେ ଓ ବିନୀତ ଭାବରେ ମିବାର ରାଜବଂଶ ସହିତ ପରିଣୟ ସୂତ୍ରରେ ଆବଦ୍ଧ ହେବାକୁ 'ପବିତ୍ରୀକୃତ ହେବାକୁ' 'ନବ ଜନ୍ମ ଲାଭ କରିବାକୁ', ପୁନର୍ବାର ରାଜପୁତ ହେବାକୁ'—ପ୍ରାର୍ଥନା କରିଥିଲେ, ଏବଂ ସେମାନଙ୍କ ପ୍ରାର୍ଥନା ଏହି ଦୁଇ ପ୍ରଧାନ ସର୍ତ୍ତ ଅନୁସାରେ ପୂରଣ କରା ହୋଇଥିଲା :— ଯଥା, (୧) ଯେଉଁ ଦୂଷଣୀୟ ପ୍ରଥା ସେମାନଙ୍କୁ ଏତେଦିନ ଯାଏ ବିଚ୍ଛିନ୍ନ କରିଥିଲା, ସେହି ପ୍ରଥାକୁ ସେମାନେ ଶପଥ ପୂର୍ବକ ପରିହାର କରିବେ (୨) ମିବାର ବଂଶର ରାଜକନ୍ୟାମାନେ ପରିଣୟ ସୂତ୍ରରେ—ଅନ୍ୟ ରାଜବଂଶ-ମାନଙ୍କରେ ପ୍ରବେଶ କଲେ ସେମାନଙ୍କ ସନ୍ତାନମାନେ ସେହି ରାଜବଂଶ-ମାନଙ୍କର ଉତ୍ତରାଧିକାରୀ ହେବେ । ଏହା ଅବଶ୍ୟ ଧର୍ମର ଜୟ ବୋଲିବାକୁ ହେବ । ମହାବୀର ପ୍ରତାପ ଆପଣା କର୍ତ୍ତବ୍ୟ ସାଧନ କରି ଚାଲିଗଲେ, କିନ୍ତୁ ତାଙ୍କ ପବିତ୍ର କର୍ମବୃକ୍ଷ ସମୟରେ ଫଳବାନ ହୋଇ ତାଙ୍କର ବଂଶର ମଙ୍ଗଳ ସାଧନ କରିଥିଲା । ଏଠାରେ ମଧ୍ୟ ଦ୍ରଷ୍ଟବ୍ୟ ଯେ ତଦାନୀନ୍ତନ ହିନ୍ଦୁ ସମାଜରେ ବ୍ୟବସ୍ଥାର ସ୍ଥିତି ସ୍ଥାପକତା (elasticity of social laws) ବିଶେଷ ପରିମାଣରେ ଥିଲା । କାରଣ ଯେଉଁ ରାଜପୁତମାନେ ମୋଗଲ ରାଜବଂଶ ସହିତ ବିବାହାଦି କରୁଥିଲେ ଓ ସେମାନଙ୍କ ସହିତ ଆହାରାଦି ମଧ୍ୟ କରୁଥିଲେ, ସେମାନଙ୍କ ହିନ୍ଦୁତ୍ୱରେ କୌଣସି ହାନି ଘଟୁ ନଥିଲା, କିମ୍ବା ସେମାନେ ଏକା-ବେଳକେ ହିନ୍ଦୁ ସମାଜରୁ ବିଚ୍ଛିନ୍ନ ହୋଇ ନିରୟଗାମୀ ହେଉନଥିଲେ । ବାସ୍ତବିକ ଦେଖିବାକୁ ଗଲେ, ସନାତନ ହିନ୍ଦୁ ଧର୍ମ ଅତୀବ ଉଦାର ।

ଯଶୋବନ୍ତ ଜଣେ ଆଦର୍ଶ ହିନ୍ଦୁ ରାଜା ଥିଲେ । ତାଙ୍କର ରାଜ୍ୟଶାସନ-କୁଶଳତା, ପ୍ରଜାବତ୍ସଳତା ଓ ବିଦ୍ୟାନୁରାଗ ରାଜପୁତ କବିଙ୍କର ନିମ୍ନଲିଖିତ କଥା ଗୁଡ଼ିକରୁ ସ୍ପଷ୍ଟ ପ୍ରତୀୟମାନେ ହେବ :—"ଯଶୋବନ୍ତ ତାଙ୍କର ସମ-ସାମୟିକ ରାଜନ୍ୟମଣ୍ଡଳୀ ମଧ୍ୟରେ ଅସାଧାରଣ ନୃପତି ଥିଲେ । ତାହାଙ୍କ ଶାସନ କାଳରେ ମାନସିକ ଜଡ଼ତା ଓ ଅଜ୍ଞାନତା ନିର୍ବାସିତ ହୋଇଥିଲା, ରାଜ୍ୟର ସର୍ବତ୍ର ବିଜ୍ଞାନର ଉତ୍ତରୋତ୍ତର ଉନ୍ନତି ସାଧିତ ହେଉଥିଲା ଏବଂ ତାଙ୍କର ସାନୁଗ୍ରହ ସହାୟତାରେ ଅନେକ ପୁସ୍ତକ ରଚିତ ହୋଇଥିଲା ।"

ଏଠାରେ ସ୍ମରଣ ରଖିବା ଉଚିତ ଯେ ରାଜସ୍ଥାନର ସମସ୍ତ ନରପତି ମୋଗଲ ସମ୍ରାଟଙ୍କ ଅଧୀନତା ଓ ଭୃତ୍ୟତ୍ୱ ସ୍ୱୀକାର କରି ସମ୍ରାଜ୍ୟର ନାନା ବିଭାଗରେ ଉଚ୍ଚ ପଦମାନ ଅଧିକାର କରି କାର୍ଯ୍ୟ କରୁଥିଲେ । ଏହି ପ୍ରଥାନୁ-ଯାୟୀ ରାଜା ଯଶୋବନ୍ତ ସିଂହ ମୋଗଲ ସମ୍ରାଟ୍ ଶାହାଜାହାନଙ୍କର ଜଣେ ପ୍ରଧାନ ସେନାପତି ଥିଲେ । ସେ ବହୁ ଯୁଦ୍ଧରେ ଅସାଧାରଣ କୃତିତ୍ୱ ଓ ବୀରତ୍ୱ ପ୍ରଦର୍ଶନ କରି ରାଜପୁତ ଜାତିର ନୈସର୍ଗିକ ବିଶ୍ୱସ୍ତତା ଓ ରାଜଭକ୍ତିର ଉଜ୍ଜ୍ୱଳ ପରିଚୟ ଦେଇଥିଲେ । ଏଠାରେ କେବଳ କେତେଗୋଟି ପ୍ରଧାନ ଘଟନାର ଉଲ୍ଲେଖ କଲେ ଯଶୋବନ୍ତଙ୍କ ଚରିତ୍ର ଅଧ୍ୟୟନ ପକ୍ଷରେ ଯଥେଷ୍ଟ ହେବ ।

ଶାହଜାହାନଙ୍କ ଆକସ୍ମିକ ଅସୁସ୍ଥତା ହେତୁରୁ ତାଙ୍କ ପୁତ୍ରମାନଙ୍କ ମଧ୍ୟରେ ରାଜ୍ୟପ୍ରାପ୍ତି ନିମିତ୍ତ ଯେଉଁ ଘୋର ଅନ୍ତର୍ବିବାଦ ଉପସ୍ଥିତ ହୋଇଥିଲା, ତହିଁରେ ଯଶୋବନ୍ତଙ୍କର ବିଶ୍ୱସ୍ତତା ଓ ରାଜଭକ୍ତିର ଉଜ୍ଜ୍ୱଳ ପରିଚୟ ମିଳେ ।

GPNanda Colln., Digitized by srujanika@gmail.com

ସମ୍ରାଟ ଓ ତାଙ୍କ ଜ୍ୟେଷ୍ଠ ପୁତ୍ର ଦାରାଙ୍କ ପକ୍ଷ ଗ୍ରହଣ କରି ଯଶୋବନ୍ତ, ଆଓରଙ୍ଗଜେବଙ୍କ ବିରୁଦ୍ଧାଚରଣପୂର୍ବକ ତାଙ୍କ ଦୁରଭିସନ୍ଧି ବିଫଳ କରିବାକୁ ବଦ୍ଧପରିକର ହେଲେ । ଏହି ଉଦ୍ଦେଶ୍ୟରେ ସେ ସ୍ୱକୀୟ ଦଳବଳ ଓ କତିପୟ ମୋଗଲ ସୈନ୍ୟ ଘେନି ଆଗ୍ରାରୁ ବାହାରି ନର୍ମଦା ନଦୀ ଅଭିମୁଖରେ ଯାତ୍ରା କଲେ । ଉଜ୍ଜୟିନୀଠାରୁ ୧୫ ମାଇଲ ଦୂରବର୍ତ୍ତୀ ନର୍ମଦା ତଟବର୍ତ୍ତୀ ଏକ ସ୍ଥାନରେ ସେ ଆଓରଙ୍ଗଜେବଙ୍କ ପ୍ରତୀକ୍ଷାରେ ରହିଲେ । ଏହିଠାରେ ଯଶୋବନ୍ତଙ୍କର ଅଦୂରଦର୍ଶିତା ପ୍ରକାଶ ପାଇଥିଲା । କିନ୍ତୁ ଟଡ୍ ସାହେବ ଏହାକୁ Magnanimity amounting to imprudence ବୋଲି କହିଅଛନ୍ତି । ଆଓରଙ୍ଗଜେବ ଦାକ୍ଷିଣାତ୍ୟରେ ଏବଂ ତାଙ୍କ ଭାଇ ମୋରାଦ ଗୁଜୁରାଟରେ ଅଛନ୍ତି । ଦୁହେଁ ଦୁଇଆଡ଼ୁ ଯଶୋବନ୍ତଙ୍କ ବିରୁଦ୍ଧରେ ଯାତ୍ରା କଲେ । ଦୁଇ ଭାଇଙ୍କୁ ଏକାଠି ପରାସ୍ତ କଲେ ଅଧିକ ସୁଖ୍ୟାତି ହବ ଭାବି ଯଶୋବନ୍ତ ଭାଇମାନଙ୍କର ମିଳନରେ ବାଧା ଦେଲେ ନାହିଁ । ଏହି ଅବିବେଚନା ଯୋଗୁଁ ତାଙ୍କୁ ପରାସ୍ତ ହେବାକୁ ହୋଇଥିଲା ।

କିନ୍ତୁ ଯୁଦ୍ଧକ୍ଷେତ୍ରରେ ଯଶୋବନ୍ତ ଓ ତାଙ୍କ ଅନୁଚରବର୍ଗ ଯେପରି ଅଲୌକିକ ବୀରତ୍ୱ, ସାହସ ଓ ରାଜଭକ୍ତି ପ୍ରଦର୍ଶନ କରିଥିଲେ, ତାହା ଅପୂର୍ବ ଏବଂ ତଦ୍ୱାରା ସେ ରାଜପୁତ ଗୌରବକୁ ଅକ୍ଷୁର୍ଣ୍ଣ ଓ ନିଷ୍କଳଙ୍କ କରିଥିଲେ । ରାଜପୁତ କବି କହିଅଛନ୍ତି, "କୁନ୍ତହସ୍ତ ଯଶୋବନ୍ତ ଆପଣାର ଯୁଦ୍ଧଘୋଟକ ମାବୁବ ପୃଷ୍ଠରେ ଆରୋହଣ କରି ସମ୍ରାଟଙ୍କ ପୁତ୍ର ଦ୍ୱୟଙ୍କୁ ଆକ୍ରମଣ କଲେ । ଏହି ଆକ୍ରମଣରେ ୧୦ ସହସ୍ର ମୁସଲମାନ ପତିତ ଏବଂ ୧୭୦୦ ରାଠୋର ଓ ରାଜସ୍ଥାନର ପ୍ରତ୍ୟେକ ବଂଶର ଅନ୍ୟ କେତେକ ରାଜପୁତ ହତ ହୋଇଥିଲେ । ଆଓରଙ୍ଗଜେବ ଓ ମୋରାଦ କୌଣସି ପ୍ରକାରରେ ରକ୍ଷା ପାଇଗଲେ । ମାବୁବ ଓ ତାହାର ସଓୟାର ଯଶୋବନ୍ତଙ୍କ ସର୍ବାଙ୍ଗ ରକ୍ତାକ୍ତ ହୋଇଥିଲେ, ସେଣେ (ଯଶୋବନ୍ତ) ଶିକାର ହରାଇଥିବା ସିଂହ ତୁଲ୍ୟ ଦେଖା ଯାଉଥିଲେ ।" ମୋଗଲ ଐତିହାସିକମାନେ ମଧ୍ୟ ଏହି ବର୍ଣ୍ଣନା ସମର୍ଥନ କରୁଅଛନ୍ତି । ସେମାନେ କହନ୍ତି— ଏହି ଦିନ ରାଜପୁତାନାର ପ୍ରତ୍ୟେକ ଅଞ୍ଚଳର ରାଜପୁତମାନେ ଏହି ଯୁଦ୍ଧରେ ଯୋଗ ଦେଇଥିଲେ ଓ ପଞ୍ଚଦଶ ସହସ୍ର ରାଜପୁତ ପ୍ରାଣତ୍ୟାଗ କରିଥିଲେ । ଟଡ୍ ସାହେବ କହନ୍ତି, ଏହି ଘଟନା ରାଜପୁତ ଜାତି ପକ୍ଷରେ ଅତୀବ ଗୌରବଜନକ । ସେମାନେ ଯେଉଁ ବୃଦ୍ଧ ଓ ଦୁର୍ବଳ ସମ୍ରାଟ ଆଓରଙ୍ଗଜେବଙ୍କର "ନିମକ ଖାଉଥିଲେ" ତାଙ୍କ ପ୍ରତି ରାଜଭକ୍ତି ଓ ବିଶ୍ୱସ୍ତତାର ପରାକାଷ୍ଠା ଏହି ଘଟନାରେ ପ୍ରଦର୍ଶନ କରିଥିଲେ ଏବଂ ଯୌବନ ସୁଲଭ ସକଳ ପ୍ରକାର ଉଚ୍ଚାଭିଳାଷ ଓ ସ୍ୱେଚ୍ଛାଲାଳସାକୁ ପଦତଳେ ଦଳନ କରିଥିଲେ । ଏହି ଯୁଦ୍ଧରେ ସମ୍ରାଟଙ୍କ ସାକ୍ଷାତ ପାରିବାରିକ (ମୁସଲମାନ) ସୈନ୍ୟମାନଙ୍କ (Immediate household troops) ଆଚରଣ ରାଜପୁତମାନଙ୍କ ଶ୍ଳାଘ୍ୟ ଆଚରଣର ସମ୍ପୂର୍ଣ୍ଣ ବିପରୀତ । ସେମାନେ ଯୁଦ୍ଧ ମୁହୂର୍ତ୍ତରେ ହିଁ ଉଦୀୟମାନ ସୂର୍ଯ୍ୟଙ୍କ (ଆଓରଙ୍ଗଜେବ) ପୂଜା କରିଥିଲେ । ଏହି ଯୁଦ୍ଧରେ ହାରବତୀର (Haravati or kotah and Boondi) ହରବଂଶୀୟ ବୀରମାନଙ୍କ ଅଦ୍ଭୁତ କାର୍ଯ୍ୟ ଜଗତର ଇତିହାସରେ ଅତୁଳନୀୟ । 'The annals of no nation on earth can furnish such an example, as an entire family, six royal brothers stretched on the field and all but onein death." ଅର୍ଥାତ୍ ଗୋଟିଏ ସମଗ୍ର ରାଜପରିବାର, ଛଅଣ ରାଜଭ୍ରାତା, ସମସ୍ତେ ରାଜଭକ୍ତି ଓ

GPNanda Colln., Digitized by srujanika@gmail.com

ବିଶ୍ୱସ୍ତତାର ଅନୁରୋଧରେ ରଣଭୂମିରେ ମୃତ୍ୟୁଶଯ୍ୟାରେ ଶୟାନ, ଏପରି ଦୃଷ୍ଟାନ୍ତ କୌଣସି ଜାତିର ପରବୃତ୍ତରେ ମିଳିବ ନାହିଁ । ବୀରକନ୍ୟା, ବୀରପତ୍ନୀ, ବୀର ଜନନୀ ରାଜପୁତ ରମଣୀ ମଧ୍ୟ କ୍ଷତ୍ରିୟ ଧର୍ମନିଷ୍ଠାର ଦୃଷ୍ଟାନ୍ତ ଦେଖାଇବାକୁ ଛାଡ଼ି ନ ଥିଲେ । ଯଶୋବନ୍ତ ଯେତେବେଳେ ଯୁଦ୍ଧକ୍ଷେତ୍ରରୁ ବାହୁଡ଼ି ଆସିଲେ, ତେତେବେଳେ ତାହାଙ୍କର ମନସ୍ୱିନୀ ସହଧର୍ମିଣୀ ତାହାଙ୍କୁ ଗ୍ରହଣ କରିବାକୁ ଘୃଣା କରିଥିଲେ ଏବଂ ଦୁର୍ଗର ଦ୍ୱାର ବନ୍ଦ କରାଇ ଦେଇଥିଲେ ।" (ଫେରିସ୍ତା)

ଫରାସୀ ଐତିହାସିକ ଶ୍ରୀଯୁକ୍ତ ବର୍ଣ୍ଣିୟର୍ ସାହେବ ଏହି ରୂପେ ଲେଖିଅଛନ୍ତି—"ରାଣାଙ୍କ କନ୍ୟା ଆପଣାର ସ୍ୱାମୀ ଯଶୋବନ୍ତ ସିଂହଙ୍କ ପରାଜୟ ଓ ପଳାୟନ ପରେ ତାହାଙ୍କୁ ଯେପରି ଭୟଙ୍କର ଭାବରେ ପ୍ରତ୍ୟାଖ୍ୟାନ କରିଥିଲେ, ତାହା ବର୍ଣ୍ଣନା ନ କରି ରହି ପାରୁନାହିଁ । ଯେତେବେଳେ ରାଣୀ ଶୁଣିଲେ ଯେ ଯଶୋବନ୍ତ ଦୁର୍ଗର ନିକଟବର୍ତ୍ତୀ ହେଲେଣି, ତାଙ୍କ ସଙ୍ଗରେ ଚାରି ପାଞ୍ଚଶତ ସୈନ୍ୟ ଅବଶିଷ୍ଟ ଅଛନ୍ତି ଏବଂ ଅବଶେଷରେ ସେ ଆଉ ଶତ୍ରୁର ସମ୍ମୁଖୀନ ହେବାକୁ ଅସମର୍ଥ ହୋଇ ଫେରି ଆସିବାକୁ ବାଧ୍ୟ ହୋଇଅଛନ୍ତି, ତେତେବେଳେ ସେ କର୍କଶ ସ୍ୱରରେ ଆଦେଶ କଲେ" ଦୁର୍ଗର ଦ୍ୱାର ବନ୍ଦ କରିଦିଅ, ଏ ଅପଯଶା ଲୋକକୁ (Infamous man) ପ୍ରବେଶ କରିବାକୁ ଦିଅନାହିଁ, ସେ ମୋହର ସ୍ୱାମୀ ନୁହେଁ । ମହାପ୍ରାଣ ରାଣାଙ୍କ ଜାମାତା ଈଦୃଶ ନୀଚାଶୟ ହୋଇ ନ ପାରେ । ତାଙ୍କର ସ୍ମରଣ ରଖିବା ଉଚିତ ଥିଲା ଯେ ଏପରି ସୁପ୍ରସିଦ୍ଧ ବଂଶ ସହିତ ସମ୍ବନ୍ଧ ହୋଇ ସେ ସେହି ବଂଶର ଧର୍ମ ଅବଲମ୍ବନ କରିବାକୁ ବାଧ୍ୟ, ଅର୍ଥାତ୍ ସେ ଜୟଲାଭ କରିଥାନ୍ତେ, କିମ୍ବା ପ୍ରାଣ ଦାନ କରିଥାନ୍ତେ ।" ମୁହୂର୍ତ୍ତକ ପରେ ତାଙ୍କ ମନରେ ଅନ୍ୟ ଏକ ଭାବ ଜାତ ହେଲା; ସେ ଆଦେଶ କଲେ "ଚିତା ପ୍ରସ୍ତୁତ କର, ମୁଁ ତହିଁରେ ଭସ୍ମୀଭୂତ ହେବି—ମୋହର ସ୍ୱାମୀ ନିଶ୍ଚୟ ମୃତ ହୋଇଅଛନ୍ତି—ଏହା ଅନ୍ୟଥା ହୋଇ ନପାରେ ।" ଫଳରେ ସେ ଆଠ ନଅଦିନ ପର୍ଯ୍ୟନ୍ତ ଏହିପରି ଉନ୍ମତ୍ତ ଅବସ୍ଥାରେ ରହିଲେ । ପରିଶେଷରେ ତାଙ୍କ ମାତା ଆସିବାରୁ ଏବଂ ରାଜାଙ୍କର କିଞ୍ଚିତ୍ କ୍ଲାନ୍ତି ଦୂର ହେଲା ମାତ୍ରକେ 'ସେ ଅନ୍ୟ ସେନା ସଂଗ୍ରହ କରି ଆଓରଙ୍ଗଜେବଙ୍କ ସହିତ ପୁନର୍ବାର ଯୁଦ୍ଧ କରିବେ ଓ ନଷ୍ଟ ଗୌରବ ପୁନରୁଦ୍ଧାର କରିବେ' ଏହିପରି ସାନ୍ତ୍ୱନା ଦେବାରୁ ରାଣୀ ପ୍ରକୃତିସ୍ଥ ହେଲେ । ଏହିଠାରେ ଭାରତୀୟ ରମଣୀମାନଙ୍କ ସାହସର ଆଦର୍ଶ ଚିତ୍ର ଦର୍ଶନୀୟ ।" ଆଧୁନିକ ନାରୀ ସମାଜରେ ଏପରି ନାରୀ ଚରିତ୍ରର ଆଲୋଚନାର ଉପାୟ ବିଧାନ କଲେ ବିଶେଷ ଉପକାର ହୋଇପାରନ୍ତା ।

ତତ୍‌ପରେ ଆଓରଙ୍ଗଜେବ ଶାହଜାହାନଙ୍କୁ ସିଂହାସନଚ୍ୟୁତ କରି ସ୍ୱୟଂ ସିଂହାସନ ଅଧିକାର କଲେ । ପରେ ଆଓରଙ୍ଗଜେବ ଅମ୍ବରପତି ଜୟସିଂହଙ୍କ ଦ୍ୱାରା ଯଶୋବନ୍ତଙ୍କ ନିକଟକୁ ସମ୍ବାଦ ପଠାଇଲେ ଯେ ସେ ବଶ୍ୟତା ସ୍ୱୀକାର କଲେ ତାଙ୍କର ସମସ୍ତ ଦୋଷ କ୍ଷମା କରାଯିବ ଓ ତାହାଙ୍କୁ ରାଜପୁତ୍ର ସୁଜାଙ୍କ ବିରୁଦ୍ଧରେ ସଜ୍ଜିତ ହେଉଥିବା ସେନାର ସେନାପତି ପଦରେ ନିଯୁକ୍ତ କରାଯିବ । ଯଶୋବନ୍ତ ସମ୍ବାଦ ପାଇ ଭାବିଲେ, ଏହି ଘଟନାରେ ପ୍ରତିଶୋଧ ଗ୍ରହଣ କରିବାର ଓ ନଷ୍ଟ ଗୌରବ ପୁନରୁଦ୍ଧାରର ସୁବିଧା ମିଳିବ । ଏହି ଆଶାରେ ସେ ଆଓରଙ୍ଗଜେବଙ୍କ ଅନୁରୋଧ ରକ୍ଷା କରି ସମ୍ରାଟଙ୍କ ସେନା ସହିତ ଯୋଗଦାନ କଲେ, କିନ୍ତୁ ସୁଜାଙ୍କ ନିକଟକୁ ଆପଣାର ପ୍ରକୃତ ଅଭିପ୍ରାୟ କହି ପଠାଇଲେ ।

GPNanda Colln., Digitized by srujanika@gmail.com

ଏଲାହାବାଦରୁ ୩୦ ମାଇଲ ଦୂରବର୍ତ୍ତୀ କଜୁ୍ୱା ନାମକ ସ୍ଥାନରେ ଭ୍ରାତୃଦ୍ୱୟ ମଧ୍ୟରେ ଯେଉଁ ଯୁଦ୍ଧ ହେଲା, ତହିଁରେ ଯଶୋବନ୍ତ ଆଓରଙ୍ଗଜେବଙ୍କର କେତେକ ସୈନ୍ୟ ବିଧ୍ୱସ୍ତ କରି ତାଙ୍କର ଶିବିର ଲୁଣ୍ଠନ କଲେ ଏବଂ ଅନେକ ବହୁମୂଲ୍ୟ ପଦାର୍ଥ ପୃଷ୍ଠରେ ଦେଇ ସ୍ୱରାଜ୍ୟକୁ ପ୍ରେରଣ କଲେ । ଏଣେ ଭ୍ରାତୃ ଦ୍ୱୟଙ୍କୁ ଯୁଦ୍ଧରେ ଛାଡ଼ିଦେଇ ସ୍ୱୟଂ ସ୍ୱ ସୈନ୍ୟ ସହ ଆଗ୍ରା ଅଭିମୁଖରେ ଯାତ୍ରା କଲେ । ସେଠି ତାଙ୍କର ହଠାତ୍ ପ୍ରବେଶରେ ନଗରବାସୀମାନେ ଏତେଦୂର ଭୟବିହ୍ୱଳ ହୋଇ ଯାଇଥିଲେ ଯେ, ଯଶୋବନ୍ତ କେବଳ ଆଦେଶ କରିଥିଲେ ସେମାନେ ଆତ୍ମସମର୍ପଣ କରିଥାନ୍ତେ ଏବଂ ଯଶୋବନ୍ତ ଶାହଜାହାନଙ୍କୁ କାରାଗାରରୁ ମୁକ୍ତ କରି ଆଓରଙ୍ଗଜେବଙ୍କ ସମସ୍ତ ଚେଷ୍ଟା ବିଫଳ କରି ଦେଇଥାନ୍ତେ—କିନ୍ତୁ ସେ ତାହା କଲେ ନାହିଁ । କାରଣ, ମୋଗଲ ସିଂହାସନର ଯଥାର୍ଥ ସ୍ୱତ୍ୱବାନ ଉତ୍ତରାଧିକାରୀ ଦାରାଙ୍କ ସହିତ ପରାମର୍ଶ କରି ଯଶୋବନ୍ତ ସମସ୍ତ କାର୍ଯ୍ୟ କରୁଥିଲେ । ଦାରାଙ୍କର ଅନେକ ସଦ୍‌ଗୁଣ ଥିଲେ ହେଁ ସେ ଆଓରଙ୍ଗଜେବଙ୍କ ପରି କାର୍ଯ୍ୟକୁଶଳ ନଥିଲେ । ଏହି ହେତୁରୁ ସେ ଉପଯୁକ୍ତ ମୁହୂର୍ତ୍ତରେ ଯଶୋବନ୍ତଙ୍କ ସହିତ ମିଳିତ ହୋଇ ପାରିଲେ ନାହିଁ ଓ ନିଜର ହସ୍ତଗତ ହୋଇଥିବା ରାଜମୁକୁଟ ହରାଇ ବସିଲେ । ଏଥିରେ ଯଶୋବନ୍ତ ହତାଶ ଓ ବିରକ୍ତ ହୋଇ ସ୍ୱରାଜ୍ୟକୁ ପ୍ରସ୍ଥାନ କଲେ ।

ଏଣେ ଆଓରଙ୍ଗଜେବ ସୁଜାଙ୍କୁ ପରାସ୍ତ କରି ଅନେକ ରାଜପୁତ ସୈନ୍ୟ ସଙ୍ଗରେ ଘେନି ପୁନର୍ବାର ଯଶୋବନ୍ତଙ୍କ ବିରୁଦ୍ଧରେ ଯାତ୍ରା କଲେ । କିନ୍ତୁ ଧୂର୍ତ୍ତ ଆଓରଙ୍ଗଜେବ ଯଶୋବନ୍ତଙ୍କ ସହିତ ହଠାତ୍ ଯୁଦ୍ଧରେ ପ୍ରବୃତ୍ତ ହେଲେ ନାହିଁ । ସେ ଅନ୍ୟ ଉପାୟ ଅବଲମ୍ବନ କରି, ଯଶୋବନ୍ତ ଯେବେ ଦାରାଙ୍କ ପକ୍ଷ ପରିତ୍ୟାଗ କରି ଯୁଦ୍ଧରେ ନିରପେକ୍ଷ ରହିବେ, ତେବେ ସେ ତାଙ୍କର ସମସ୍ତ ଦୋଷ କ୍ଷମା କରିବେ—ଏହି ମର୍ମରେ ଖଣ୍ଡିଏ ପତ୍ର ଯଶୋବନ୍ତଙ୍କ ନିକଟକୁ ପଠାଇଲେ । ଯଶୋବନ୍ତ ଏହି ସର୍ତ୍ତ ଗ୍ରହଣ କଲେ ଏବଂ ଶିବଜୀଙ୍କ ବିରୁଦ୍ଧରେ ଯେଉଁ ସମରସଜ୍ଜା ହୋଇଥିଲା, ତହିଁରେ ରାଜପୁତ ସେନାର ଅଧିନାୟକ ହୋଇଯିବାକୁ ମଧ୍ୟ ସମ୍ମତ ହେଲେ । କିନ୍ତୁ ପିତୃ ବୈରୀ, ଭ୍ରାତୃ ବୈରୀ, କପଟାଚାରୀ, ବିଶ୍ୱାସଘାତକ ଆଓରଙ୍ଗଜେବଙ୍କ ସହିତ ସେ ସଚ୍ଛଳ ଭାବରେ କାର୍ଯ୍ୟ କରିବା ନ୍ୟାୟସଙ୍ଗତ ମଣୁ ନଥିଲେ । ବୃଦ୍ଧ ସମ୍ରାଟ ଶାହଜାହାନ ଓ ମୋଗଲ ସିଂହାସନର ନ୍ୟାୟସଙ୍ଗତ ଉତ୍ତରାଧିକାରୀ ଦାରାଙ୍କ ପ୍ରତି ତାଙ୍କର ଅଚଳ ରାଜଭକ୍ତି ଓ ବିଶ୍ୱସ୍ତତା ସତ୍ତ୍ୱେ ଯଶୋବନ୍ତ ଆଓରଙ୍ଗଜେବଙ୍କ ସଙ୍ଗେ ସମ୍ପୂର୍ଣ୍ଣ ବିପରୀତ ଭାବରେ କାର୍ଯ୍ୟ କରୁଥିଲେ । ଏହି କାରଣରୁ ସେ ଦାକ୍ଷିଣାତ୍ୟରେ ପଦାର୍ପଣ କରିବା ମାତ୍ରକେ ଆଓରଙ୍ଗଜେବଙ୍କ ବିରୁଦ୍ଧରେ ଶିବଜୀଙ୍କ ସହିତ ଷଡ଼ଯନ୍ତ୍ର କରିବାକୁ ଆରମ୍ଭ କଲେ । ଆଓରଙ୍ଗଜେବ ଏସବୁ ଜାଣିପାରିଲେ, କିନ୍ତୁ ପ୍ରକାଶ୍ୟ ଭାବରେ କିଛି ନ କହି ଯଶୋବନ୍ତଙ୍କୁ ଦାକ୍ଷିଣାତ୍ୟରୁ ଡକାଇନେଇ ଅମ୍ବରପତି ଜୟସିଂହଙ୍କୁ ଶିବଜୀଙ୍କ ବିରୁଦ୍ଧରେ ପ୍ରେରଣ କଲେ ଓ ଯଶୋବନ୍ତଙ୍କୁ ସୁଦୂର ଗୁଜୁରାଟର ଶାସନକର୍ତ୍ତା ପଦରେ ନିଯୁକ୍ତ କଲେ । ସେଠାରେ ମଧ୍ୟ ଯଶୋବନ୍ତଙ୍କ କାର୍ଯ୍ୟକଳାପ ଆଓରଙ୍ଗଜେବଙ୍କୁ ଭଲ ଲାଗିଲା ନାହିଁ । ଏହି ହେତୁରୁ ତାଙ୍କୁ ଦମନ କରିବା ସକାଶେ ସେ ନାନା ଉପାୟ ଉଦ୍ଭାବନ କରିବାକୁ ଲାଗିଲେ, କିନ୍ତୁ ଯଶୋବନ୍ତଙ୍କ ଠାରେ ସମସ୍ତ ବ୍ୟର୍ଥ ହେଲା । ପରିଶେଷରେ କାବୁଲରେ ବିଦ୍ରୋହ ଘଟିବାରୁ ଆଓରଙ୍ଗଜେବ ଯଶୋବନ୍ତଙ୍କୁ ପ୍ରଧାନ ସେନାପତି ରୂପେ ନିଯୁକ୍ତ କଲେ ଓ ତାଙ୍କ ଅନୁପସ୍ଥିତିରେ ତାଙ୍କ

GPNanda Colln., Digitized by srujanika@gmail.com

ପରିବାରର ବିଶେଷ ଯତ୍ନ କରିବେ ବୋଲି ଅଙ୍ଗୀକାର କଲେ । ଯଶୋବନ୍ତ ସ୍ୱକୀୟ ଜ୍ୟେଷ୍ଠ ପୁତ୍ର ପୃଥ୍ୱୀସିଂହଙ୍କଠାରେ ନିଜର ସ୍ତ୍ରୀ ପରିବାର ଓ ରାଜ୍ୟର ସମସ୍ତ ଭାର ଅର୍ପଣ କରି କାବୁଲକୁ ଯାତ୍ରା କଲେ, ସେଠାରୁ ତାହାଙ୍କୁ ଆଉ ଫେରି ଆସିବାକୁ ହୋଇ ନଥିଲା ।

ମାରବାରର ଇତିବୃତ୍ତରେ ବର୍ଣ୍ଣିତ ଅଛି ଯେ ଯଶୋବନ୍ତ କାବୁଲରେ ଥିବା ସମୟରେ ଆଓରଙ୍ଗଜେବ ଏକଦା ପୃଥ୍ୱୀସିଂହଙ୍କୁ ଦିଲ୍ଲୀ ରାଜଦରବାରକୁ ଆହ୍ୱାନ କଲେ । ପୃଥ୍ୱୀସିଂହ ସେଠାରେ ଯଥେଷ୍ଟ ସମ୍ମାନ ଓ ଆଦର ଲାଭକଲେ । ଦିନେ ସମ୍ରାଟ୍ ଅସାମାନ୍ୟ ଅନୁଗ୍ରହ ପ୍ରକାଶ ପୂର୍ବକ ରାଜକୁମାରଙ୍କୁ ଆପଣା ନିକଟକୁ ଆହ୍ୱାନ କରି ତାଙ୍କର ଯୁକ୍ତ ହସ୍ତକୁ ଆପଣାର ଏକ ହସ୍ତରେ ଦୃଢ଼ ଭାବରେ ଧାରଣ କରି କହିଲେ, "ଆଚ୍ଛା ରାଠୋର, ମୁଁ ଶୁଣିଅଛି ଯେ ତୁମ୍ଭର ବାହୁ ବଳ ତୁମ୍ଭ ପିତାଙ୍କର ବାହୁବଳର ତୁଲ୍ୟ ଅଟେ, ତୁମେ ବର୍ତ୍ତମାନ କ'ଣ କରିପାରିବ ?" ରାଜକୁମାର ଉତ୍ତର କଲେ, "ଈଶ୍ୱର ଆପଣଙ୍କୁ ରକ୍ଷା କରନ୍ତୁ, ଯେତେବେଳେ ରାଜା ଆପଣାର ଅନୁଗ୍ରହର ଚିହ୍ନ ସ୍ୱରୂପ ଅତୀବ ଦୀନହୀନ ପ୍ରଜା ପୃଷ୍ଠରେ ସ୍ୱକୀୟ ହସ୍ତ ସ୍ଥାପନ କରନ୍ତି, ତେତେବେଳେ ତାହାର ସକଳ ଆଶା ଚରିତାର୍ଥ ହୋଇଯାଏ, କିନ୍ତୁ ଯେତେବେଳେ ସମ୍ରାଟ ମୋହର ଉଭୟ ହସ୍ତ ଧାରଣ କରିଅଛନ୍ତି, ତେତେବେଳେ ମୁଁ ବୋଧ କରୁଅଛି ଯେପରିକି ମୁଁ ସମୁଦାୟ ପୃଥିବୀ ଜୟ କରିପାରିବି ।" ରାଜକୁମାରଙ୍କ ତେଜଃପୂର୍ଣ୍ଣ ଓ ଉତ୍ତେଜନା ସୂଚକ ଅଙ୍ଗଭଙ୍ଗୀ ହେତୁରୁ ତାଙ୍କ କଥା ଗୁଡ଼ିକ ଅତୀବ ଓଜସ୍ୱୀ ଓ ହୃଦୟସ୍ପର୍ଶୀ ହୋଇଥିଲା ଏବଂ ଆଓରଙ୍ଗଜେବ ତାହା ଶୁଣି ହଠାତ୍ ଚିତ୍କାର କରି ଉଠିଲେ, "ଆଃ ! ଏହିଠାରେ ତ ଆଉ ଗୋଟିଏ ଖୁଟୁନ ବିଦ୍ୟମାନ" (ଏହି ଶବ୍ଦ ସେ ଯଶୋବନ୍ତଙ୍କ ପ୍ରତି ସର୍ବଦା ପ୍ରୟୋଗ କରୁଥିଲେ) । ତଥାପି ରାଜକୁମାରଙ୍କର ସରଳ ଓ ସାହସୀକ କଥାରେ ସନ୍ତୁଷ୍ଟ ହେବାର ଛଳନା କରି ତାଙ୍କ ସକାଶେ ସେ ଅତି ମନୋହର ପୋଷାକ ଆଣିଦେବାର ଆଦେଶ କଲେ । ପ୍ରଚଳିତ ରୀତ୍ୟନୁଯାୟୀ ରାଜକୁମାର ସେହି ପୋଷାକ ସେହିଠାରେ ପରିଧାନ କଲେ ଏବଂ ସମ୍ରାଟଙ୍କୁ ଅଭିବାଦନ କରି ଏବଂ ଅଚିରେ ଅତି ଉଚ୍ଚ ପଦ ଲାଭ କରିବାର ସୁନିଶ୍ଚିତ ଆଶା-ବାଣୀ ଶ୍ରବଣ କରି ପ୍ରସ୍ଥାନ କଲେ ।

କିନ୍ତୁ ହା ! ସେହି ଦିବସ ରାଜକୁମାର ଅନ୍ତିମ ଦିବସରେ ପରିଣତ ହେଲା—ସେ ନିଜର ବାସଗୃହରେ ପ୍ରବେଶ କରିବାର ଅବ୍ୟବହିତ ପରେ ପୀଡ଼ିତ ହେଲେ ଓ ଅକଥନୀୟ ଯନ୍ତ୍ରଣାରେ ଇହଲୀଳା ସମ୍ବରଣ କଲେ । ସମ୍ମାନ ସୂଚକ ବିଷଜର୍ଜରିତ ବହୁମୂଲ୍ୟ ପୋଷାକଟି ଏହି ଅକାଳ ମୃତ୍ୟୁର ନିଦାନ ଥିଲା । ବାସ୍ତବିକ, ମନୁଷ୍ୟ ପ୍ରଦତ୍ତ ସମ୍ମାନର ମୂଲ୍ୟ ସିନା ଏତିକି ଓ ତାହାର ପରିଣାମ ସିନା ଏହିପରି । କେତେ କେତେ ସମ୍ମାନ ପରିଚ୍ଛଦ ଯେ ସମ୍ମାନ ଗ୍ରହୀତା ସୂକ୍ଷ୍ମ ଶରୀର ପର୍ଯ୍ୟନ୍ତ ସ୍ପର୍ଶ କରି ମାନବ ଜୀବନର ଅମୂଲ୍ୟ ଧନ "ମନୁଷ୍ୟତ୍ୱ"କୁ ବିନଷ୍ଟ କରୁଅଛି, ତାହା କବି ଅମର ସଙ୍ଗୀତରେ କୀର୍ତ୍ତନ କରି ଯାଇଅଛନ୍ତି—

"ପଦଟିଏ ଦେବେ କର୍ଣ୍ଣରସାୟନ,
ପଦ-ଅନୁରୂପେ ବସନ ଭୂଷଣ ।
x x x
ଏହି ଛାର ଏହି ଅକିଞ୍ଚିତକର
ସମ୍ମାନ ସକାଶେ ଏଡ଼େ ବ୍ୟସ୍ତ ନର
x x x

GPNanda Colln., Digitized by srujanika@gmail.com

ଏଥିପାଇଁ ଲୋକେ ଡିଅନ୍ତି କିଭଳି
ମନୁଷ୍ୟତା ସ୍ଥାନ-ସେବା-ପୀଠେ ବଳି ।
ଉପାଧି-ଲାଳସା-ରୂପୀ ମହା ବ୍ୟାଧି
ହୋଇଛି ସାତ୍ତ୍ୱିକ ଧରମର ବାଦୀ ।

X X X

ମନୁଷ୍ୟ-ପୂଜାରେ ଯେତେ କାଳ ଯାଏ
ଆତ୍ମତତ୍ତ୍ୱେ ଯେବେ ସେହିଥିରୁ ପାଏ,
ସାରସାର ବୁଝି ଦେଉଥାନ୍ତେ ଲୋକେ
ଓହ୍ଲାଇ ଆସନ୍ତା ସ୍ୱର୍ଗ ମର୍ତ୍ତ୍ୟ ଲୋକେ ।

ପୃଥ୍ୱୀ ସିଂହ ଯଶୋବନ୍ତଙ୍କ ବାର୍ଦ୍ଧକ୍ୟର ସମ୍ବଳ ଥିଲେ ଏବଂ ଅଶେଷ ସଦ୍‌ଗୁଣ ଦ୍ୱାରା ଭୂଷିତ ଥିଲେ । ଏହିପରି ସଂଘଟିତ ତାଙ୍କର ମୃତ୍ୟୁର ଦାରୁଣ ସମ୍ବାଦ କାବୁଲ୍‌ଠାରେ ପ୍ରାପ୍ତ ହୋଇ ଯଶୋବନ୍ତ ଦୁଃଖ ଓ ଶୋକରେ ଅଧୀର ହୋଇ ପଡିଲେ । ପୁଣି "ଛିଦ୍ରେଷ୍ୱନର୍ଥା ବହୁଲୀଭବନ୍ତି" ଏହି ନିୟମାନୁସାରେ ତାଙ୍କର ଅବଶିଷ୍ଟ ଦୁଇଗୋଟି ପୁତ୍ର କାବୁଲ୍‌ର ଅନିଷ୍ଟକର ଜଳବାୟୁ ଦ୍ୱାରା ରୋଗାକ୍ରାନ୍ତ ହୋଇ ପ୍ରାଣତ୍ୟାଗ କଲେ । ସେ କଠୋର ବୀର ରାଜା ଯଶୋବନ୍ତ ଏହିପରି ଦୁଃଖ ଶୋକରେ ଅଭିଭୂତ ହୋଇ ୧୬୮୧ ଖ୍ରୀଷ୍ଟାବ୍ଦରେ ମାନବଲୀଳା ସମ୍ବରଣ କଲେ । ଏହି ବର୍ଷ ମଧ୍ୟ ମହାବୀର ଶିବଜୀ ପଞ୍ଚତ୍ୱ ପ୍ରାପ୍ତ ହେବାରୁ ଆଓରଙ୍ଗଜେବଙ୍କ ଜୀବନ ଏକାବେଳକେ ଭୟବିମୁକ୍ତ ହେଲା । ମୃତ୍ୟୁ କାଳରେ ଯଶୋବନ୍ତଙ୍କ ଆଉ କେହି ପୁତ୍ର ଜୀବିତ ନ ଥିଲେ ସତ୍ୟ, କିନ୍ତୁ ସେହି ସମୟରେ ତାଙ୍କର ପତ୍ନୀ ଅନ୍ତଃସତ୍ତ୍ୱା ଥିଲେ । ତାଙ୍କ ଗର୍ଭରୁ ଯେଉଁ ପୁତ୍ର ଜାତ ହେଲେ, ସେ ଅଜିତ ସିଂହ ନାମରେ ପ୍ରଖ୍ୟାତ ହୋଇଥିଲେ ।

ରାଜା ଯଶୋବନ୍ତ ସିଂହଙ୍କ ଜୀବନ ଦୁଇ ପ୍ରଧାନ ଭାଗରେ ବିଭକ୍ତ । ପ୍ରଥମ ଭାଗରେ ପ୍ରଗାଢ଼ ରାଜଭକ୍ତି ଓ ବିଶ୍ୱସ୍ତତା ତାଙ୍କ ଜୀବନକୁ ଉଜ୍ଜ୍ୱଳିତ କରିଥିଲା; କିନ୍ତୁ ଦ୍ୱିତୀୟ ଭାଗରେ ଅଦମ୍ୟ ପ୍ରତିଶୋଧ ପ୍ରବୃତ୍ତି ହୃଦୟକୁ ସର୍ବଦା ଅସ୍ଥିର କରୁଥିଲା । ଶାହଜାହାନ ଓ ଆଓରଙ୍ଗଜେବଙ୍କ ଚରିତ୍ର ବୈଷମ୍ୟ ଏଥିର ପ୍ରଧାନ କାରଣ ଥିଲା । ଯେତେବେଳେ ଯଶୋବନ୍ତ ବୃଦ୍ଧ ଭକ୍ତି ଭାଜନ ସମ୍ରାଟ ଶାହଜାହାନଙ୍କ ଅଧୀନରେ କାର୍ଯ୍ୟ କରୁଥିଲେ, ସେତେବେଳେ ସେ ନିଜକୁ ସମ୍ରାଟଙ୍କ ପକାଶେ ଉତ୍ସର୍ଗ କରିବାକୁ ପ୍ରସ୍ତୁତ ଥିଲେ; କିନ୍ତୁ ଯେତେବେଳେ ଶାହଜାହାନଙ୍କ ସପକ୍ଷରେ ତାଙ୍କ ସମସ୍ତ ଚେଷ୍ଟା ବିଫଳ ହେଲା, ପ୍ରକୃତ ଉତ୍ତରାଧିକାରୀ ଯୁବରାଜ ଦାରା ଯେତେବେଳେ ଆପଣାର ଦକ୍ଷତା ଅଭାବରୁ କରତଳଗତ ରାଜମୁକୁଟ ହରାଇ ବସିଲେ ଏବଂ ଘଟନା ଚକ୍ରର ଅଧୀନଅଭାବ କ୍ରୁର ଓ ନରପିଶାଚ ପିତୃଦ୍ରୋହୀ ଓ ହିନ୍ଦୁ ଧର୍ମର ଭୟଙ୍କର ଶତ୍ରୁ ଆଓରଙ୍ଗଜେବଙ୍କ ଅଧୀନରେ କାର୍ଯ୍ୟ କରିବାକୁ ପଡ଼ିଲା; ସେତେବେଳେ ଦୁର୍ନିବାର ପ୍ରତିଶୋଧ ବହ୍ନି ତାଙ୍କ ହୃଦୟରେ ସର୍ବଦା ପ୍ରଜ୍ୱଳିତ ହେଉଥିଲା; କିନ୍ତୁ ପ୍ରକାଶ୍ୟ ଭାବରେ ପ୍ରତିଶୋଧ ନେବା ଶ୍ରେୟସ୍କର ନମଣି କୌଶଳ କ୍ରମେ ଏହା କରିବାକୁ ସେ ସର୍ବଦା ଯତ୍ନଶୀଳ ଥିଲେ । ଗୁଜରାଟ, ଦାକ୍ଷିଣାତ୍ୟ, ମାଳବ, ଆଜମୀର ଓ କାବୁଲ୍—ଏହି ପ୍ରତ୍ୟେକ ସ୍ଥାନର ରାଜ ପ୍ରତିନିଧି ଥିବା ସମୟରେ ସେ ପ୍ରଚ୍ଛନ୍ନ ଭାବରେ ଆଓରଙ୍ଗଜେବଙ୍କ ବିରୁଦ୍ଧାଚରଣ କରୁଥିଲେ । କିନ୍ତୁ ମହା

GPNanda Colln., Digitized by srujanika@gmail.com

କୌଶଳୀ ଆଓରଙ୍ଗଜେବଙ୍କ ବିଶ୍ୱାସଘାତକତା ପୂର୍ଣ୍ଣ ମାୟା ଜାଲ ସମକ୍ଷରେ ଯଶୋବନ୍ତଙ୍କ କୌଶଳ ପରାସ୍ତ ହୋଇଥିଲା । ଯଶୋବନ୍ତଙ୍କ ପ୍ରତି ଆଓରଙ୍ଗଜେବଙ୍କ ଏତେଦୂର ଭୟ ଥିଲା ଯେ ସେ ପ୍ରବଳ ପରାକ୍ରାନ୍ତ ସମ୍ରାଟ ହୋଇ ସୁଦ୍ଧା ଏବଂ ଯଶୋବନ୍ତଙ୍କ ଦୁରଭିସନ୍ଧି ସର୍ବଦା ଅବଗତ ଥିଲେ ହେଁ ପ୍ରକାଶ୍ୟ ଭାବରେ ତାଙ୍କୁ କିଛି କହିବାକୁ ସାହସ ନକରି କୌଶଳ ଅବଲମ୍ବନ ପୂର୍ବକ ତାଙ୍କର ସର୍ବନାଶ କରିବାରେ ବଦ୍ଧ ପରିକର ହେଲେ ।

କିନ୍ତୁ ଯଶୋବନ୍ତ ଯଦି ଈଦୃଶ କୁଟୀଳ ନୀତି ଅବଲମ୍ବନ ନକରି ପ୍ରତାପଙ୍କ ତୁଲ୍ୟ ସରଳ ସାତ୍ତ୍ୱିକ ଭାବରେ ଚାଳିତ ହୋଇ ସ୍ୱଦେଶ ଓ ସ୍ୱଧର୍ମର ରକ୍ଷା କାର୍ଯ୍ୟରେ ଜୀବନ ମନ ନିୟୋଜିତ କରିଥାନ୍ତେ, ତେବେ ତାଙ୍କର ନିଜର ଅସାଧାରଣ ଶକ୍ତି ଓ ତଦାନୀନ୍ତନ ଭାରତର ଅବସ୍ଥା ବିବେଚନାରେ ସେ ମୋଗଲ ଶକ୍ତିର ବିଲୋପ ସାଧନ କରି ପାରିଥାନ୍ତେ । କିନ୍ତୁ ସେ ତାହା କରି ପାରିଲେ ନାହିଁ । ତଦାନୀନ୍ତନ ସାମାଜିକ ଅବସ୍ଥା ମଧ୍ୟ ତାହାର ଅନୁକୂଳ ନଥିଲା । ସମାଜରେ ସାତ୍ତ୍ୱିକ ଭାବ ପରିବର୍ତ୍ତରେ ରାଜସ ଭାବରେ ପ୍ରାବଲ୍ୟ ବିଶେଷ ପରିମାଣରେ ଦୃଷ୍ଟ ହେଉଥିଲା । ଲୋକମାନଙ୍କ ଦୃଷ୍ଟି ବଡ଼ ସଙ୍କୀର୍ଣ୍ଣ ହୋଇ ପଡ଼ିଥିଲା । ଦୂରଦର୍ଶିତା ଆଦୌ ନଥିଲା କହିଲେ ଚଳେ । ଏହି ହେତୁରୁ ତତ୍କାଳୀନ ରାଜପୁତ ନୃପତିମାନେ ଆଓରଙ୍ଗଜେବଙ୍କ ଘୃଣିତ ଚରିତ୍ର ଦେଖି ସୁଦ୍ଧା ସାମାନ୍ୟ ରାଜାନୁଗ୍ରହଲାଳସା ଦମନ କରି ପାରୁନଥିଲେ ଏବଂ କିଏ ବେଶି ରାଜାନୁଗ୍ରହ ପାଇବ, ଏହି ନୀଚ କାଳୋଚିତ ବାଜିଆରେ ମଧ୍ୟ ଅନେକ ସମୟରେ ଲିପ୍ତ ଥିଲେ । ଯଶୋବନ୍ତ ମଧ୍ୟ ଏହି 'ତଣ୍ଡୁଳ କଣା' ରୂପୀ ରାଜସମ୍ମାନ ଲାଳସାରେ ନୃଶଂସ ବ୍ୟାଧରୂପୀ ଆଓରଙ୍ଗଜେବଙ୍କ ମାୟାଜାଲରେ ପଡ଼ି ଆଉ ଉଦ୍ଧାର ପାଇ ପାରିଲେନାହିଁ । ମହାତ୍ମା ଟଡ୍ ସାହେବ କହନ୍ତି "Doubtless the Rathore was sometimes dazzled by the baits which Politic the King administered to his vanity; and when all his brothers princess contended for royal fovour, it was something to be singled out as the first among his peers in Rajputna × × × ×. But it was this vanity and the immense power wielded by the kings who could reward service by the addition of a Vice-royalty to their hereditary domains, that made the Rajput princess slaves; for, had all the princely contemporaries of Jeswant,—Joy Singh of Amber, the Rana Raj of Mewar and Sivaji,—coalesced against their national foe, the Moghul Power must have been extinct."

GPNanda Colln., Digitized by srujanika@gmail.com

# ରାଣା ପ୍ରତାପ ସିଂହ

ଅନେକ ସମୟରେ ଶୁଣାଯାଏ ଯେ, ଆମ୍ଭମାନଙ୍କ ଦେଶରେ ଆଦର୍ଶ ଜାତୀୟ ବୀର ପୁରୁଷଙ୍କ ଅଭାବ । ରାମ, ଯୁଧିଷ୍ଠିର ପ୍ରଭୃତି ପୁରାଣ ବର୍ଣ୍ଣିତ ମହାତ୍ମାମାନେ ଦେବତା ଓ ଅର୍ଦ୍ଧ ଦେବତା (gods and demi gods) । ଅତଏବ ସେମାନଙ୍କ ଚରିତ୍ର ଅନୁକରଣ କରିବା ସାଧାରଣଙ୍କ ପକ୍ଷେ ଉପଯୋଗୀ ନୁହେଁ, 'ଆମ୍ଭେମାନେ କ୍ଷୁଦ୍ର ମାନବ ହୋଇ କିପରି ସେମାନଙ୍କ ସମକକ୍ଷ ହେବା ?' ଯୁଧିଷ୍ଠିରଙ୍କ ପରି ସତ୍ୟବାଦୀ ହୁଅ" ଶୁଣି ଅନେକେ କହନ୍ତି, "ଯୁଧିଷ୍ଠିର ସ୍ୱୟଂ ଧର୍ମଙ୍କ ପୁତ୍ର ଥିଲେ, ତାଙ୍କ ପକ୍ଷରେ ଯାହା ସମ୍ଭବ, ଆମ୍ଭମାନଙ୍କ ପକ୍ଷରେ ତାହା ଅସମ୍ଭବ" । ଜନସାଧାରଣ ଏମାନଙ୍କୁ ଦେବତା ରୂପେ ପୂଜା କରିପାରନ୍ତି, କିନ୍ତୁ ଏମାନଙ୍କୁ ଅନୁକରଣ କରିବାକୁ ସାହସ କରିପାରନ୍ତି ନାହିଁ । ଅତଏବ ଜାତୀୟ ଅଭ୍ୟୁଥାନ ଓ ଉନ୍ନତି ପକ୍ଷରେ ଐତିହାସିକ ଯୁଗର ସ୍ୱଭାବସିଦ୍ଧ ଆଦର୍ଶ ବୀର ଚରିତ୍ରର ଏକାନ୍ତ ପ୍ରୟୋଜନ । ଏପରି ବୀର ଚରିତ୍ରର ଉଦାହରଣ ଭାରତୀୟ ଇତିହାସରେ ବିରଳ ନୁହେଁ । ଆଉ କଥା କେତିକି ଥାଉ, ରାଜପୁତ ଇତିହାସରେ ପ୍ରକୃତ ବୀରତ୍ୱର ଭୂରି ଭୂରି ଦୃଷ୍ଟାନ୍ତ ଦେଖାଯାଏ । ରାଣା ପ୍ରତାପ ସିଂହ ଏହି ବୀର ଜାତିର ଏକ ସୁସନ୍ତାନ । ତାଙ୍କର ଅଦ୍ଭୁତ ଚରିତ୍ର କିଞ୍ଚିତ୍ ଚିନ୍ତା କରିବା ଓ ସେ ଆମ୍ଭମାନଙ୍କର ଜଣେ ଜାତୀୟ ବୀରପୁରୁଷ ଅଟନ୍ତି କି ନାହିଁ, ଏହା ଆଲୋଚନା କରିବା ଏହି କ୍ଷୁଦ୍ର ପ୍ରବନ୍ଧର ଉଦ୍ଦେଶ୍ୟ ।

ଏଠାରେ ଗୋଟିଏ ପ୍ରଶ୍ନ ଉଠୁଅଛି—ବୀରତ୍ୱ କଣ ଓ ବୀରଚରିତ୍ରଚିନ୍ତନ ବା ବୀର ପୂଜାର ଆବଶ୍ୟକତା କଣ ? ମୂଳରେ କହିବାକୁ ଗଲେ, ନିଜର କର୍ତ୍ତବ୍ୟ ପାଳନରେ ଅଦମ୍ୟ ସାହସ, ଉତ୍ସାହ, ସହିଷ୍ଣୁତା ଓ ଅଟଳ ଅଧ୍ୟବସାୟ ପ୍ରଭୃତି ଗୁଣ ପ୍ରକୃତ ବୀରତ୍ୱର ପ୍ରଧାନ ଉପାଦାନ । ଏହି କଥାକୁ ଟିକିଏ ବିଶ୍ଳେଷଣ କରି ଦେଖିଲେ ସତ୍ୟ ପାଳନ ଓ ନ୍ୟାୟାନୁସରଣରେ, କିମ୍ବା ଏକ କଥାରେ ଧର୍ମ ସାଧନରେ (Practise of virtue) ଦୃଢ଼ ନିଷ୍ଠା ବୀରତ୍ୱର ମୂଳ ଭିତ୍ତି । ରାମଚନ୍ଦ୍ରଙ୍କ ବୀରତ୍ୱ କେଉଁଠାରେ ? ରାବଣ ବଧରେ ତେତେ ନୁହେଁ, ଯେତେ ପିତାଙ୍କ ସତ୍ୟ ପାଳନରେ । ଜାନକୀଙ୍କ ଉଦ୍ଧାର ରୂପ କର୍ତ୍ତବ୍ୟ ସାଧନରେ ରାବଣକୁ ମାରିବାକୁ ପଡ଼ିଲା—"ରାବଣ ବଧ" ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ନୁହେଁ । ଦୁରାତ୍ମା ଦୁର୍ଯୋଧନ ପାଣ୍ଡବମାନଙ୍କର ନ୍ୟାଯ୍ୟ ଅଂଶ ହରଣ କଲା ଓ ସାଧ୍ୱୀ ସତୀ ଦ୍ରୌପଦୀଙ୍କୁ ଅକାରଣରେ ଅପମାନ ଦେଲା, ଏଥିପାଇଁ ଆପଣାର ନ୍ୟାଯ୍ୟ ଅଂଶ ଲାଭ କରିବା ଓ ଦ୍ରୌପଦୀଙ୍କର ଅପମାନର ପ୍ରତିଶୋଧ ନେବା କର୍ତ୍ତବ୍ୟ ମଣି ମହାଭାରତ ଯୁଦ୍ଧରେ ପ୍ରବୃତ୍ତ ହେଲେ । ପୁଣି ଅର୍ଜ୍ଜୁନ

GPNanda Colln., Digitized by srujanika@gmail.com

ଯେତେବେଳେ ନିଜର ଭାଇ ବନ୍ଧୁଙ୍କୁ ବଧ କରିବା ଅକର୍ତ୍ତବ୍ୟ ଜ୍ଞାନ କରି ଯୁଦ୍ଧରୁ କ୍ଷାନ୍ତ ହେଲେ ସେତେବେଳେ ଶ୍ରୀକୃଷ୍ଣ ଯୁଦ୍ଧ କରିବା ତାଙ୍କର କର୍ତ୍ତବ୍ୟ ବୁଝାଇ ଦେବାରେ ଅର୍ଜୁନ ଯୁଦ୍ଧ କାର୍ଯ୍ୟରେ ପ୍ରବୃତ୍ତ ହେଲେ । ଏଥିରୁ ସ୍ପଷ୍ଟ ଉପଲବ୍ଧି ହେବ—କର୍ତ୍ତବ୍ୟ ନିଷ୍ଠା ବା ଧର୍ମ ସାଧନ ବୀରତ୍ୱର ପ୍ରଧାନ ଲକ୍ଷ ।

ପ୍ରତାପ ସିଂହଙ୍କ ଚରିତ୍ର ଚିନ୍ତନ ଦ୍ୱାରା ଶଂସିତ ଉଦ୍ଦେଶ୍ୟ କେତେଦୂର ସାଧିତ ହୋଇପାରେ, ଦେଖାଯାଉ । ପୃଥିବୀର ଇତିବୃତ୍ତରେ ପ୍ରଧାନତଃ ତିନି ଶ୍ରେଣୀର ବୀର ପୁରୁଷ ଦୃଷ୍ଟିଗୋଚର ହୁଅନ୍ତି । (୧)ଧର୍ମବୀର (୨)ଜ୍ଞାନବୀର ଓ (୩) କର୍ମବୀର । ପ୍ରଥମ ଶ୍ରେଣୀର ବୀରମାନଙ୍କର କର୍ମ ନିଦାନ (spring of action) ବିଶ୍ୱଜନୀନ ପ୍ରେମ, ଦ୍ୱିତୀୟ ଶ୍ରେଣୀର ବୀରମାନଙ୍କର କର୍ମ ନିଦାନ ଅଦମ୍ୟ ଜ୍ଞାନ ପିପାସା ଓ ତୃତୀୟ ଶ୍ରେଣୀର ବୀରମାନଙ୍କର କର୍ମ ନିଦାନ; ସ୍ୱଦେଶ ପ୍ରେମ ବା ସ୍ୱଜାତି ପ୍ରେମ କିମ୍ବା ସ୍ଥଳ ଭେଦରେ ସ୍ୱକୀୟ ବଂଶ ବା ପରିବାରର ପ୍ରେମ । ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀର କାର୍ଯ୍ୟ କ୍ଷେତ୍ର ସମୁଦାୟ ବିଶ୍ୱ, ତୃତୀୟ ଶ୍ରେଣୀର କାର୍ଯ୍ୟକ୍ଷେତ୍ର ଜନ୍ମଭୂମି, ସ୍ୱଦେଶ ବା ପରିବାର । କାର୍ଯ୍ୟ କ୍ଷେତ୍ରର ତାରତମ୍ୟ ଥିଲେ ହେଁ ମୂଳତଃ ସମସ୍ତଙ୍କର କାର୍ଯ୍ୟ ସମାନ ରୂପେ ପବିତ୍ର । ରଣା ପ୍ରତାପ ସିଂହ ଏହି ତୃତୀୟ ଶ୍ରେଣୀର ବୀର ଅଟନ୍ତି । ମହାତ୍ମା କାରଲାଇଲ୍‌ଙ୍କ (charlyle) ଭାଷାରେ ତାହାଙ୍କୁ 'ରାଜବୀର' ବା Hero as king କୁହାଯାଇପାରେ; କିନ୍ତୁ Hero as patriot ବା 'ସ୍ୱଦେଶ ପ୍ରେମିକବୀର' କହିଲେ ଆହୁରି ଠିକ ହେବ । ପ୍ରତାପଙ୍କୁ ସ୍ୱଦେଶ ପ୍ରେମର ଅବତାର କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଯୌବନର ପ୍ରାରମ୍ଭରେ ପ୍ରତାପ 'ରଣା' ଉପାଧି ଧାରଣ କରି ମିବାର ରାଜ୍ୟର ଅଧୀଶ୍ୱର ହେଲେ । କିନ୍ତୁ ଦେଖିଲେ ମିବାର ରାଜଧାନୀ ଚିତୋର ନଗରୀ ଶତ୍ରୁ କର କବଳିତ । ପୂର୍ବ ପୁରୁଷମାନଙ୍କ ବିପୁଳ କୀର୍ତ୍ତି କଳାପ ତାଙ୍କର ସ୍ମୃତି ପଥାରୂଢ ହୁଏନ୍ତେ ତାଙ୍କ ହୃଦୟରେ ଏହି ଆଶାର ସଂଚାର ହେବାକୁ ଲାଗିଲା ଯେ ସେ ଚେଷ୍ଟା କଲେ ମିବାର ରାଜ୍ୟର ଗୌରବ ଓ ସ୍ୱାଧୀନତା ପୁନଃ ସ୍ଥାପନ କରି ଦିନେ ଆକବରଙ୍କୁ ମଧ୍ୟ ଦିଲ୍ଲୀ ସିଂହାସନରୁ ତଡ଼ି ଦେଇପାରିବେ । କିନ୍ତୁ ଯେତେବେଳେ ଏହିପରି ଚିନ୍ତାରେ ମଗ୍ନ, ତେତେ-ବେଳେ ତାଙ୍କ ସମସାମୟିକ ରାଜସ୍ଥାନର ଅନ୍ୟାନ୍ୟ ରାଜପୁତ ନୃପତିମାନଙ୍କ ଆଚରଣ କଥା ଭାବି ପ୍ରତାପଙ୍କ ମନରେ ଗଭୀର ଦୁଃଖ ଜାତ ହୋଇଥିଲା । ମାରବାର, ଅମ୍ବର, ବିକାନୀର, ବୁନ୍ଦୀ, ଯୋଧପୁର ଓ ଅନ୍ୟାନ୍ୟ ରାଜ୍ୟର ଭୂପାଳମାନେ ମାୟାବୀ ଆକବରଙ୍କ ସମ୍ମୋହନ ମନ୍ତ୍ରରେ ଭୁଲିଯାଇ ତାଙ୍କ ଅଧୀନତା ସ୍ୱୀକାର କଲେ ଓ ପ୍ରତାପଙ୍କର ଶତ୍ରୁତାଚରଣ କଲେ । ପ୍ରତାପଙ୍କ ସହୋଦର କୁଳ ପାଂଶୁଳ ସାଗରଜୀ ମଧ୍ୟ ତାଙ୍କୁ ପରିତ୍ୟାଗ କରି ଆକବରଙ୍କ ସଙ୍ଗରେ ମିଶିଲେ ।

କି ଭୟଙ୍କର ଅବସ୍ଥା । ଏକ ଆଡ଼େ ପ୍ରବଳ ପରାକ୍ରାନ୍ତ ଅସୀମ ଧନଶାଳୀ ସମ୍ରାଟ ଆକବର, ପୁଣି ତାଙ୍କ ସହିତ ପ୍ରତାପଙ୍କ ସ୍ୱଧର୍ମାବଲମ୍ବୀ ନିଜର ଭାଇ ବନ୍ଧୁ କୁଟୁମ୍ବ ରାଜପୁତ ରାଜାମାନେ ଦଳବଳ ଘେନି ସମ୍ମିଳିତ । ଅନ୍ୟଆଡ଼େ ଏକାକୀ ପ୍ରତାପ ଓ ତାଙ୍କର ମୁଷ୍ଟିମେୟ ଅନୁଚରବର୍ଗ । କିନ୍ତୁ ପ୍ରତାପ ଏସବୁ କିଛି ଗଣନା ନ କରି, ଏସବୁ ବୈଷମ୍ୟ ପ୍ରତି ଭ୍ରୁକ୍ଷେପ ନ କରି, ନିଜ ବିବେକ

GPNanda Colln., Digitized by srujanika@gmail.com

ତାଣୀର ଅନୁବର୍ତ୍ତୀ ହୋଇ ସ୍ୱକୀୟ କର୍ତ୍ତବ୍ୟ ପଥରେ ଅଗ୍ରସର ହେବାକୁ ଲାଗିଲେ । ବିପଦ ଯେତେ ବଢ଼ିବାକୁ ଲାଗିଲା, ତାଙ୍କର ସହିଷ୍ଣୁତା ତେତେ ଦୃଢ଼ୀଭୂତ ହେବାକୁ ଲାଗିଲା । "Virtue could see to do what virtue would though Sun and Moon were in the flat sea sunk." ମହାକବି ମିଲଟନ୍‌ଙ୍କ ଏହି ମହତ୍ତ୍ୱ ଉକ୍ତି ପ୍ରତାପଙ୍କ ଜୀବନରେ ଅତି ସ୍ପଷ୍ଟ ଭାବରେ ପ୍ରମାଣିତ । ପ୍ରତାପ ଏହି ପବିତ୍ର ପ୍ରତିଜ୍ଞା କଲେ "ମୁଁ ମୋହର କର୍ତ୍ତବ୍ୟ ପ୍ରାଣପଣେ ସମାଦନ କରିବି; ସ୍ୱଦେଶ ସକାଶେ ଜୀବନକୁ ବଳିଦାନ କରିବି । ବାହାରର ଆଲୋକ, ବାହାରର ସାହାଯ୍ୟ, ବାହାରର ବଳ ଲୋଡ଼ା ନାହିଁ । ଯେ ଯିବ ଯାଉ, ଯେ ରହିବ ରହୁ, ଭାବନା ନାହିଁ—ମୁଁ ମୋର କାର୍ଯ୍ୟ କରିବି ।" ଆଭ୍ୟନ୍ତରୀଣ ସ୍ୱର୍ଗୀୟ ବଳରେ ବଳୀୟାନ୍ ହୋଇ ପ୍ରତାପ ଏକାକୀ ପଚିଶ ବର୍ଷ କାଳ ପରାକ୍ରାନ୍ତ ମୋଗଲ ସାମ୍ରାଜ୍ୟର ସମବେତ ଚେଷ୍ଟାକୁ ବିଫଳ କରିଥିଲେ । କେତେବେଳେ ମରୁଭୂମିରେ ଥାଇ ଶତ୍ରୁର ଧ୍ୱଂସସାଧନ କରୁଥାନ୍ତି । କେତେବେଳେ ବା ଏକ ପାହାଡ଼ରୁ ଅନ୍ୟ ପାହାଡ଼କୁ ପଳାୟନ କରୁଥାନ୍ତି, କେତେବେଳେ ଅଲ୍ପାହାର, କେତେବେଳେ ଅନାହାର ଓ କେତେବେଳେ ଫଳମୂଳାହାରରେ ସପରିବାର ସହିତ ଦିନପାତ କରୁଥାନ୍ତି । ସେହି ଭୟଙ୍କର ଅବସ୍ଥାରେ ଶ୍ୱାପଦସଙ୍କୁଳ ଅରଣ୍ୟ ମଧ୍ୟରେ ସ୍ୱକୀୟ ସାହସ ଓ ପ୍ରତିରୋଧ-ପ୍ରବୃତ୍ତିର ଯୋଗ୍ୟ ଉତ୍ତରାଧିକାରୀ ବାଳବୀର ଅମର ସିଂହଙ୍କ ଚରିତ୍ର ସଂଗଠନରେ ନିଯୁକ୍ତ ଥାନ୍ତି ।

ଏହି ପଞ୍ଚବିଂଶତି ବର୍ଷ ବ୍ୟାପୀ ସୁଦୀର୍ଘ ନିର୍ବାସନ କାଳ ମଧ୍ୟରେ ପ୍ରତାପ ଯେଉଁ ଅଦ୍ଭୁତ ସାହସିକ କାର୍ଯ୍ୟମାନ ସାଧନ କରିଥିଲେ, ତାହାର ନିଦର୍ଶନ ମିବାର ରାଜ୍ୟର ପ୍ରତ୍ୟେକ ଉପତ୍ୟକାରେ ବିରାଜମାନ ରହିଅଛି । ସେସବୁର ସ୍ମୃତି ପ୍ରତ୍ୟେକ ପ୍ରକୃତ ରାଜପୁତଙ୍କ ହୃଦୟ ମନ୍ଦିରରେ ଅମୂଲ୍ୟ ରତ୍ନ ରୂପେ ସୁରକ୍ଷିତ ଓ ଅନେକ କାର୍ଯ୍ୟ ମଧ୍ୟ ମୋଗଲ ଇତିହାସରେ ଲିପିବଦ୍ଧ । କିମ୍ବଦନ୍ତୀ ପ୍ରସାଦରୁ ମିବାର ରାଜ୍ୟରେ ସେହି ଘଟନା ଗୁଡ଼ିକ ସେଠାରେ ଚିର ନୂତନ ଏବଂ ପ୍ରତାପଙ୍କ ଦଳପତିମାନଙ୍କ ଆଧୁନିକ ବଂଶଧରମାନେ ପୂର୍ବପୁରୁଷ-ମାନଙ୍କ ଯଶୋରାଶି କୀର୍ତ୍ତନ କଲାବେଳେ ଅଶ୍ରୁ ବିସର୍ଜନ ନ କରି ରହିପାରନ୍ତି ନାହିଁ ।

ପ୍ରତାପଙ୍କ ଭୀଷଣ ବିପତ୍ତି ସମୟରେ ତାଙ୍କର ଦଳପତିମାନେ ପ୍ରଭୁ ଭକ୍ତିର ପରାକାଷ୍ଠା ପ୍ରଦର୍ଶନ କରିଥିଲେ । ଧନ ଓ ପାର୍ଥିବ ସୁଖର ପ୍ରଲୋଭନ ପ୍ରଥମତଃ ସେମାନଙ୍କୁ କିଞ୍ଚିତ୍ ବିଚଳିତ କରିଥିଲେ ହେଁ ତାହାଙ୍କୁ ପରିତ୍ୟାଗ କରି ଯିବାର ନୀଚତା କାହାରି ନଥିଲା । ଜୟମଲ୍ଲ, ପଟ୍ଟ ଓ ଚଣ୍ଡଙ୍କର ବଂଶଧରମାନେ ବିପତ୍ତି କାଳରେ ପ୍ରଭୁଭକ୍ତି ଓ ବିଶ୍ୱସ୍ତତାର ଉଜ୍ଜ୍ୱଳତମ ଦୃଷ୍ଟାନ୍ତ ।

ଚିତୋର ଦୁର୍ଗର ସମସ୍ତ ଅଳଙ୍କାର, ଆଭରଣ ଓ ସୌନ୍ଦର୍ଯ୍ୟୋପକରଣ ଶତ୍ରୁକର୍ତ୍ତୃକ ଲୁଣ୍ଠିତ ହୋଇଥିବାରୁ ସେ ଅନାଥ 'ବିଧବା'ବତ୍ ପ୍ରତୀୟମାନ ହୋଇଥିଲା । ଚିତୋରର ଏହି ଦୁର୍ଗତି ଚିରସ୍ମରଣୀୟ କରିବା ନିମିତ୍ତ ଓ ତାହାର ପୁନରୁଦ୍ଧାର ପ୍ରବୃତ୍ତିକୁ ଆହୁରି ଉତ୍ତେଜିତ କରିବା ନିମିତ୍ତ ପ୍ରତାପ ଆପଣା ଉପରେ ଏକ ନିଷେଧାଜ୍ଞା ଜାରୀ କଲେ କି ଚିତୋରର ଗୌରବ ଚିହ୍ନମାନ ପୁନରୁଦ୍ଧୃତ ନ ହେବା ପର୍ଯ୍ୟନ୍ତ ସେ ନିଜେ ଓ ତାଙ୍କର ଉତ୍ତରାଧିକାରୀ-ମାନେ କୌଣସି ବିଳାସ ସାମଗ୍ରୀ ବା ଆଡମ୍ବର ସୂଚକ ଦ୍ରବ୍ୟ ବ୍ୟବହାର

GPNanda Colln., Digitized by srujanika@gmail.com

କରିବେ ନାହିଁ । ସେହି ଦିନଠାରୁ ସ୍ୱର୍ଣ୍ଣ ଓ ରୌପ୍ୟର ଭୋଜନ ପାତ୍ରମାନ ଘୁଞ୍ଚାଇ ଦେଇ ବୃକ୍ଷ ପତ୍ରରେ ଭୋଜନ କଲେ ଓ ରତ୍ନରାଜି ଖଚିତ ସୁଖସେଜ୍ୟ ପର୍ଯ୍ୟଙ୍କମାନ ପରିତ୍ୟାଗ କରି ତୃଣ ଶଯ୍ୟାରେ ଶୟନ କଲେ । ପୁଣି ଆପଣାର ଶ୍ମଶ୍ରୁ ଓ ଅପରିଷ୍କାର ରହିଲା । ସ୍ୱଦେଶ ପ୍ରେମିକ ରାଜାଙ୍କର ନିଷେଧାଜ୍ଞାର ଏହି ଚିହ୍ନ-ମାନ ଅଦ୍ୟାପି-ଅଳ୍ପାଧିକପରିମାଣରେ ଦେଖାଯାଏ । ମିବାର ରାଜ୍ୟର ରାଜପୁତ-ମାନଙ୍କର ଶ୍ମଶ୍ରୁ କ୍ଷୌର କରାହୁଏ ନାହିଁ । ସେମାନଙ୍କର ଭୋଜନ ବେଳେ ସ୍ୱର୍ଣ୍ଣ ବା ରୌପ୍ୟ ଭୋଜନ ପାତ୍ର ତଳେ ପତ୍ର ଦିଆଯାଏ ଓ ଶୟନ କାଳରେ ପଲଙ୍କ ତଳେ ତୃଣ ସ୍ଥାପିତ ହୁଏ ।

ରାଜା ରାମମୋହନ ଯେପରି ଯୁଗଚିତ ଧର୍ମର ସ୍ଥାପୟିତା ପ୍ରତାପ ସେହିପରି ଯୁଗଚିତ ସ୍ୱଦେଶ ପ୍ରେମର ଜୀବନ୍ତ ଅବତାର । ଜଗତର ସମସ୍ତ ଘଟଣାର ମୂଳରେ ଏକ ଅଦୃଶ୍ୟ ହସ୍ତ ସର୍ବଦା କାର୍ଯ୍ୟ କରୁଅଛି ଏବଂ ତାହା ସମସ୍ତ ଜଗତ୍‌ବାସୀଙ୍କ ମଙ୍ଗଳ ନିମିତ୍ତ ଏହି ଦୃଢ଼ ବିଶ୍ୱାସ ହୃଦୟରେ ଜାଗ୍ରତ ରଖି ଆମ୍ଭେମାନେ ଯେବେ ସ୍ୱଦେଶର ହିତସାଧନ ଦିଗରେ ଜୀବନୋତ୍ସର୍ଗ ନ କରୁଁ ତେବେ ଆମ୍ଭେମାନେ ମନୁଷ୍ୟ ପଦର ଅଯୋଗ୍ୟ । କେତେକ ସୁବିଜ୍ଞ ଓ ସୁବିଶ୍ୱସ୍ତ ସମ୍ପନ୍ନ ଦଳପତିମାନଙ୍କ ସାହାଯ୍ୟରେ ସେ ରାଜ୍ୟର ଶାସନ ପ୍ରଣାଳୀର ସଂସ୍କାର ପୂର୍ବକ ତାହାକୁ ଉକ୍ତ ସମୟର ଓ ଆପଣାର ପରିମିତ ଧନବଳର ଉପଯୋଗୀ କରିବାକୁ ଲାଗିଲେ । ନୂତନ ଦାନ ପତ୍ରମାନ ପ୍ରସ୍ତୁତ ହେଲା ଓ ତଦୀୟ ଶାସନ କାଳରେ ଦଳପତିମାନେ କିପରି କାର୍ଯ୍ୟ କରିବାର ଆବଶ୍ୟକ, ତାହା ନିର୍ଦ୍ଦେଶ ପୂର୍ବକ ନୂତନ ବ୍ୟବସ୍ଥାମାନ ପ୍ରଣୀତ ହେଲା । ତଦାନୀନ୍ତନ ରାଜଧାନୀ କମଳମୀର, ଗୋଗୁନ୍ଦା ଓ ଅନ୍ୟାନ୍ୟ ପାର୍ବତ୍ୟ ଦୁର୍ଗ-ମାନ ଦୃଢ଼ୀଭୂତ କରାଇଲେ । ମିବାରର ସମତଳ ଭୂମିରେ ଦ୍ୱନ୍ଦ୍ୱ ପ୍ରକାରରେ ଯୁଦ୍ଧ କରିବାକୁ ଅକ୍ଷମ ହୋଇ ପ୍ରତାପ ପୂର୍ବପୁରୁଷମାନଙ୍କ ପଦ୍ଧତି ଅନୁସରଣ ପୂର୍ବକ ସ୍ୱକୀୟ ପ୍ରଜାବର୍ଗଙ୍କୁ ପାର୍ବତ୍ୟ ପ୍ରଦେଶକୁ ପ୍ରସ୍ଥାନ କରିବାକୁ କଠୋର ଆଦେଶ ପ୍ରଦାନ କଲେ । ସେହି ସୁଦୀର୍ଘ ଯୁଦ୍ଧ ସମୟ ମଧ୍ୟରେ ମିବାର ରାଜ୍ୟର ଶସ୍ୟଶାଳୀ ଉର୍ବର ସ୍ଥାନ ଗୁଡ଼ିକ ଜନଶୂନ୍ୟ ଓ ଶସ୍ୟଶୂନ୍ୟ ହୋଇ ପଡ଼ି ରହିଥିଲା ଏବଂ ପ୍ରଜାମାନଙ୍କ ଆବାସଭୂମି ହିଂସ୍ରଜନ୍ତୁମାନଙ୍କ ବାସସ୍ଥାନରେ ପରିଣତ ହେଲା । ତାଙ୍କର ଏହି କଠୋର ନୀତିର କିଞ୍ଚିତ୍ ମାତ୍ର ବ୍ୟତିକ୍ରମ ଦେଖିଲେ ପ୍ରତାପ ଅତି କଠୋର ଦଣ୍ଡବିଧାନ କରୁଥିଲେ ।

ଏହି ସବୁ କାରଣରୁ ଆକବର ଆଉ କାଳବିଳମ୍ବ ନକରି ପ୍ରତାପଙ୍କ ବିରୁଦ୍ଧରେ ଅସ୍ତ୍ର ଧାରଣ କଲେ ଓ ଆଜମୀରରେ ସ୍ୱୀୟ ସୈନ୍ୟ ସେନା ନିବାସ ସ୍ଥାପନ କଲେ । ମାରବାର ପତି ମାଲଦେବ, ଅମ୍ବରପତି ଭଗବାନ ଦାସଙ୍କ ଦୃଷ୍ଟାନ୍ତ ଅନୁସରଣ ପୂର୍ବକ ଆକବରଙ୍କ ବିରୁଦ୍ଧାଚରଣ କରିବା ଶ୍ରେୟସ୍କର ନ ମଣି ତାଙ୍କର ଅଧୀନତା ସ୍ୱୀକାର କଲେ । ଅମ୍ବର ଓ ମାରବାରର ରାଜା-ମାନଙ୍କର ଏପରି ଆଚରଣ ଦେଖି ରାଜସ୍ଥାନର ଅନ୍ୟାନ୍ୟ ସମସ୍ତ ରାଜାମାନେ କ୍ରମେ କ୍ରମେ ଆକବରଙ୍କ ବଶ୍ୟତା ସ୍ୱୀକାର କଲେ ଓ ମୋଗଲ ସାମ୍ରାଜ୍ୟର ନାନା ବିଭାଗରେ ଉଚ୍ଚ ପଦମାନ ପ୍ରାପ୍ତ ହେଲେ, ଏପରିକି ବିବାହ ସୂତ୍ରରେ ଆକବରଙ୍କ ସହିତ ସମ୍ବନ୍ଧ ହେବାକୁ କିଞ୍ଚିନ୍ମାତ୍ର ସଙ୍କୋଚ ବୋଧ କଲେ ନାହିଁ । ମୋଗଲ ଐତିହାସିକ ଏହି ରାଜପୁତ ରାଜାମାନଙ୍କୁ ହିଁ ମୋଗଲ ସିଂହାସନର ସ୍ତମ୍ଭ ଓ ଭୂଷଣ ରୂପେ ବର୍ଣ୍ଣନ କରିଅଛନ୍ତି ।

GPNanda Colln., Digitized by srujanika@gmail.com

ନିଜ ବଂଶର ପବିତ୍ରତା ରକ୍ଷାର୍ଥ ପ୍ରତାପଙ୍କ ବଳବତୀ ନିଷ୍ଠା ଗୋଟିଏ ଘଟନାରେ ସ୍ପଷ୍ଟ ରୂପେ ପ୍ରକଟିତ ହୋଇଅଛି । ଅମ୍ବରପତି ରାଜା ମାନସିଂହ ଆକବରଙ୍କ ଶ୍ୟାଳକ ଥିଲେ । ଶୋଲାପୁର ବିଜୟରୁ ଫେରିବା ସମୟରେ ସେ ପ୍ରତାପଙ୍କ ସହିତ ସାକ୍ଷାତ କରିବାକୁ ଇଚ୍ଛା କଲେ । ପ୍ରତାପ ତେତେବେଳେ କମଳମୀରରେ ଥିଲେ ଓ ମାନସିଂହଙ୍କ ଆଗମନବାର୍ତ୍ତା ଶୁଣି ତାଙ୍କୁ ପାଛୋଟି ଆଣିବାକୁ ଉଦୟସାଗର ପର୍ଯ୍ୟନ୍ତ ଅଗ୍ରସର ହେଲେ । ଏହି ହ୍ରଦର ତୀରରେ ମାନସିଂହଙ୍କ ଅତିଥି ସତ୍କାରର ଆୟୋଜନ ହୋଇ ଖାଦ୍ୟାଦି ପ୍ରସ୍ତୁତ କରାଗଲା । ରାଣା ସ୍ୱୀୟ ପୁତ୍ର ଅମର ସିଂହଙ୍କୁ ମାନସିଂହଙ୍କ ସତ୍କାର କାର୍ଯ୍ୟରେ ନିଯୁକ୍ତ କରି ସ୍ୱୟଂ ଭୋଜନ ସ୍ଥାନରୁ ଅନ୍ତର୍ହିତ ହେଲେ । ଅମର ସିଂହ ଆଦର ସହକାରେ ମାନସିଂହଙ୍କୁ ଆହ୍ୱାନ କଲେ । ଭୋଜନ ସ୍ଥାନରେ ଉପବିଷ୍ଟ ହୋଇ ରାଣାଙ୍କ ଅନୁପସ୍ଥିତିର କାରଣ ପଚାରିବାରୁ ଅମର ସିଂହ ଉତ୍ତର ଦେଲେ, "ରାଣାଙ୍କର ମୁଣ୍ଡବ୍ୟଥା ହେଉଅଛି, ସେ ଆସିପାରିବେ ନାହିଁ; ଆପଣ ସେ ସବୁ ଚିନ୍ତା ନକରି ଆତିଥ୍ୟ ଗ୍ରହଣ ପୂର୍ବକ ଆହାର କରନ୍ତୁ ।" ମାନସିଂହ ଉତ୍ତର କଲେ, "ରାଣାଙ୍କୁ କହ, ମୁଁ ତାଙ୍କ ମୁଣ୍ଡବ୍ୟଥାର କାରଣ ବୁଝି ପାରୁଅଛି, କିନ୍ତୁ ଯେଉଁ ଭ୍ରମ ହୋଇଅଛି, ତାହା ସଂଶୋଧନୀୟ ନୁହେଁ, ମାତ୍ର ସେ ଯେବେ ମୋ ସହିତ ଆହାର ନ କରିବେ, ତେବେ ଆଉ କିଏ କରିବ ?" ରାଣା ଏହା ଶୁଣି ଆଉ କୌଣସି ଛଳନା ନ କରି ଦୁଃଖପ୍ରକାଶ ପୂର୍ବକ କହି ପଠାଇଲେ, "ଯେଉଁ ରାଜପୁତ ଜଣେ ତୁର୍କୀକୁ ଆପଣାର ଭଗିନୀ ପ୍ରଦାନ କରିଅଛନ୍ତି ଓ ସମ୍ଭବତଃ ତାଙ୍କ ସହିତ ଭୋଜନ କରିଅଛନ୍ତି, ସେ ସେପରି ରାଜପୁତଙ୍କ ସହିତ ଆହାର କରିବାକୁ ଅକ୍ଷମ ।" ମାନସିଂହ ଏହା ଶୁଣି ଭୋଜନ ସ୍ଥାନରୁ ଉଠି ଚାଲିଗଲେ, ଯେତିକି ଅନ୍ନ ଦେବତାଙ୍କୁ ଦେଇଥିଲେ, ସେତିକି । ଅଶ୍ୱାରୋହଣ କରି ସେଠାରୁ ପ୍ରସ୍ଥାନ କରିବା ସମୟରେ ସମ୍ମୁଖରେ ରାଣାଙ୍କୁ ଦେଖି କହିଲେ, "ମୁଁ ଯେବେ ତୁମ୍ଭର ଗର୍ବ ଖର୍ବ ନ କରେ, ତେବେ ମୋର ନାମ ମାନସିଂହ ନୁହେଁ ।" ରାଣା ଉତ୍ତର କଲେ, "ମୁଁ ତୁମ୍ଭଙ୍କୁ ଭେଟିଲେ ଆପଣାକୁ ସୁଖୀ ମଣିବି ।" ଏହି ସମୟରେ ଆଉ ଏକ ବ୍ୟକ୍ତି କହିଉଠିଲା, "ତୁମ୍ଭର ଆକବର ଫୋପାଙ୍କୁ ମଧ୍ୟ ସଙ୍ଗରେ ଘେନି ଆସିବ ।" ମାନସିଂହ ଯେଉଁ ସ୍ଥାନରେ ଭୋଜନରେ ବସିଥିଲେ ତାହା ଅପବିତ୍ର ହୋଇ ଯାଇଅଛି ବୋଲି ସେ ସ୍ଥାନ ଗଙ୍ଗା ଜଳରେ ଧୌତ କରାଗଲା ଓ ଯେଉଁ ଦଳପତିମାନେ ସ୍ୱଧର୍ମଭ୍ରଷ୍ଟ ମାନସିଂହଙ୍କୁ ଦେଖିଥିଲେ, ସେମାନେ ନିଜକୁ ଅପବିତ୍ର ଜ୍ଞାନ କରି ସ୍ନାନାଦି ଦ୍ୱାରା ଅପବିତ୍ରତା ଦୂର କଲେ । ଏହି ସମସ୍ତ ଘଟଣା ଆକବରଙ୍କ କର୍ଣ୍ଣଗୋଚର ହୁଅନ୍ତେ ନିଜ ପ୍ରତି ଅର୍ପିତ ଏପରି ଅପମାନ ହେତୁ ତାଙ୍କ ମନରେ ଅତିଶୟ କ୍ରୋଧ ହେଲା । ପ୍ରତାପଙ୍କ ଗର୍ବ ଅତି ଶୀଘ୍ର ଖର୍ବ କରିବା ଉଦ୍ଦେଶ୍ୟରେ ଆକବର ମହା ସମାରୋହରେ ସମରସଜ୍ଜା କରିବାକୁ ଲାଗିଲେ—ହଳଦୀଘାଟରେ ସର୍ବପ୍ରଥମ ସମରାନଳ ପ୍ରଜ୍ୱଳିତ ହେଲା ।

ଆକବରଙ୍କ ଜ୍ୟେଷ୍ଠ ପୁତ୍ର ସେଲିମ ଅସଂଖ୍ୟ ମୋଗଲ ବାହିନୀର ସେନାପତି । ରାଜା ମାନସିଂହ ଓ ପ୍ରସିଦ୍ଧ ମହାବତ୍ ଖାଁ (ସାଗରଜୀଙ୍କ ପୁତ୍ର) ତାଙ୍କ ଅଧୀନସ୍ଥ ସେନାପତି ଓ ପରାମର୍ଶଦାତା । ଏହି ଅସଂଖ୍ୟ ମୋଗଲ ସେନା ଆରାବଲ୍ଲୀ ପର୍ବତର ପଶ୍ଚିମ ପାର୍ଶ୍ୱ ଦେଇ ମିବାର ଅଭିମୁଖରେ ଅବାଧରେ ଯାତ୍ରା କରିବାକୁ ଲାଗିଲେ ଓ ପ୍ରତାପ ତାଙ୍କ ଦ୍ୱାବିଂଶତି ସହସ୍ର ପରିମିତ ରାଜପୁତ ସୈନ୍ୟ ସହିତ ହଳଦୀଘାଟ ଗିରିସଂକଟଠାରେ ସେଲିମଙ୍କ ପ୍ରତୀକ୍ଷାରେ ରହିଲେ ।

GPNanda Colln., Digitized by srujanika@gmail.com

ହଳଦୀଘାଟ ଗିରିସଂକଟକୁ ଐତିହାସିକମାନେ ମିବାରର ଥର୍ମପଲ୍ଲୀ ଆଖ୍ୟା ପ୍ରଦାନ କରିଅଛନ୍ତି । ବାସ୍ତବିକ, ଗ୍ରୀକ୍‌ବୀର ଲିଓନିଡ଼ାସ୍ ଓ ତାଙ୍କ ଅଧିନସ୍ଥ ବୀରମାନେ ଯେପରି ଥର୍ମପଲ୍ଲୀଠାରେ ମାତୃଭୂମି ନାମରେ ଆତ୍ମୋତ୍ସର୍ଗ କରିଅଛନ୍ତି, ପ୍ରବାପ ଓ ତାଙ୍କ ଅନୁଚରବର୍ଗ ସେହିପରି ହଳଦୀଘାଟଠାରେ ଅଲୌକିକ ବୀରତ୍ୱ ଦ୍ୱାରା ଅମର କୀର୍ତ୍ତି ରଖି ଯାଇଅଛନ୍ତି ।

ଆରାବଲ୍ଲୀ ପର୍ବତଶ୍ରେଣୀ ମଧ୍ୟରେ ହଳଦୀଘାଟ ଗୋଟାଏ ଗିରି-ସଂକଟ । ଏହାର ଚତୁର୍ଦ୍ଦିଗସ୍ଥ ସ୍ଥାନମାନ ନିବିଡ଼ ଅରଣ୍ୟ ଓ ପର୍ବତମାଳାରେ ପରିପୂର୍ଣ୍ଣ । ଏହିଠାରେ ୧୫୭୬ ଖ୍ରୀଷ୍ଟାବ୍ଦ (୧୬୩୧ ଶତାବ୍ଦ) ଜୁଲାଇ ମାସ (ଶ୍ରାବଣ ୭)ରେ ଉଭୟ ସେନା ଭେଟି ତୁମୁଳ ସଂଗ୍ରାମ ଆରମ୍ଭ ହେଲା । ପ୍ରତାପ ରଙ୍ଗପତାକା ଉଡ୍ଡୀନ କରି ଅସୀମ ସାହସରେ ମୋଗଲ ବାହିନୀର ବିଷମ ବ୍ୟୂହମାନ ଭେଦ କରି ତହିଁର କେନ୍ଦ୍ରସ୍ଥଳରେ ଉପସ୍ଥିତ ହେଲେ । ମାନସିଂହଙ୍କୁ ଅନ୍ୱେଷଣ କରି ନ ପାରିବାରୁ ସେଲିମଙ୍କ ସମ୍ମୁଖୀନ ହେଲେ । ସେଲିମଙ୍କ ରକ୍ଷକମାନେ ପ୍ରତାପଙ୍କ ସମ୍ମୁଖରେ ଭଙ୍ଗ ଦେଲେ । ଇତ୍ୟବସରେ ପ୍ରତାପଙ୍କ ପରମ ପ୍ରଭୁଭକ୍ତ ଅଶ୍ୱ ଚୈତକ ଅସୀମ ସାହସ ସହକାରେ ସେଲିମଙ୍କ ହସ୍ତୀ ଉପରେ ଏକ ପଦ ସ୍ଥାପନ କରନ୍ତେ ପ୍ରତାପ ନିଜ ବର୍ଚ୍ଛା ଦ୍ୱାରା ତାହାଙ୍କୁ ଏପରି ଆଘାତ କଲେ ଯେ ହସ୍ତୀର ହାଉଦାର ଲୌହଫଳକ ନ ଥିଲେ, ସେହି ଅବ୍ୟର୍ଥ ଆଘାତରେ ସେଲିମଙ୍କର ପଞ୍ଚତ୍ୱ ପ୍ରାପ୍ତି ହୋଇଥାନ୍ତା । ହାତୀର ମାହୁନ୍ତର ପ୍ରାଣନାଶ ହେବାରୁ ହାତୀ ଉଚ୍ଛୃଙ୍ଖଳ ହୋଇ ସେଲିମଙ୍କୁ ଘେନି ଦୌଡ଼ିଲା । ଏହିଠାରେ ତୁମୁଳ ଯୁଦ୍ଧ ଲାଗିଲା । ମୋଗଲ ଓ ରାଜପୁତ ବୀରମାନେ ଆପଣା ଆପଣା ସେନାପତିଙ୍କୁ ରକ୍ଷା କରିବା ପାଇଁ ଉନ୍ମତ୍ତ ହୋଇ ପରସ୍ପରର ରକ୍ତରେ ପୃଥିବୀ ପ୍ଲାବିତ କଲେ । ଇତି ମଧ୍ୟରେ ପ୍ରତାପଙ୍କ ଶରୀର ସାତ ସ୍ଥାନରେ କ୍ଷତ ହୋଇଗଲା, ତିନିଥର ତାଙ୍କର ଜୀବନ ବିପଦଗ୍ରସ୍ତ ହେଲା । ତଥାପି ସେ ଅଚଳ ଅଟଳ ଭାବରେ ଶତ୍ରୁ ସଂହାର କରିବାକୁ ଲାଗିଲେ । ଅବଶେଷରେ ପ୍ରତାପଙ୍କୁ ଏକାବେଳକେ ଅଭିଭୂତ ହୋଇ ପଡ଼ିବାର ଦେଖି ଝାଲା ପ୍ରଦେଶର ମାନା ନାମକ ଦଳପତି ପ୍ରତାପଙ୍କ ରାଜଛତ୍ର ଛଡ଼ାଇ ନେଇ ନିଜ ମସ୍ତକ ଉପରେ ରଖିବାରୁ ମୋଗଲମାନେ ତାହାଙ୍କୁ ପ୍ରତାପ ଜାଣି ବେଷ୍ଟନ କଲେ, ଅନ୍ୟଆଡେ ପ୍ରତାପଙ୍କୁ ଅନ୍ୟ ରାଜପୁତମାନେ ଯୁଦ୍ଧ ସ୍ଥାନରୁ ଦୂରକୁ ଘେନିଗଲେ । ମାନା ତାହାଙ୍କର ଅନୁଚରବର୍ଗଙ୍କ ସହିତ ରଣକ୍ଷେତ୍ରରେ ପ୍ରାଣ ବିସର୍ଜନ କରିଲେ । ରାଜପୁତମାନଙ୍କ ଈଦୃଶ ସାହସିକତା ସତ୍ତ୍ୱେ ସେଲିମ ବିଜୟଲାଭ କଲେ । ତାଙ୍କର ସେନା ସର୍ବାଂଶରେ ପ୍ରତାପଙ୍କ ସେନା ଅପେକ୍ଷା ଶ୍ରେଷ୍ଠ ଥିଲେ । ପ୍ରତାପଙ୍କ ୨୨ ସହସ୍ର ସୈନ୍ୟ ମଧ୍ୟରୁ ୮ ସହସ୍ର ମାତ୍ର ଜୀବିତ ଥିଲେ ।

ପ୍ରଭୁଭକ୍ତ ଚୈତକ ସମସ୍ତ ଦିନ ପ୍ରତାପଙ୍କୁ ବହନ କରିଥିଲା । ବର୍ତ୍ତମାନ ମଧ୍ୟ ଗୋଟିଏ ପାର୍ବତ୍ୟ-ସ୍ରୋତ ଲମ୍ଫ ଦ୍ୱାରା ଅତିକ୍ରମ କରି ଚୈତକ ଦୁଇଜଣ ମୋଗଲ ଅନୁଧାବନକାରିଙ୍କ ହସ୍ତରୁ ପ୍ରଭୁଙ୍କୁ ରକ୍ଷା କଲା । ଚୈତକ ମଧ୍ୟ କ୍ଷତବିକ୍ଷତ ହୋଇଥିବାରୁ ତାହାର ଗତି କ୍ରମଶଃ ମନ୍ଦ ହୋଇ ଆସିଲା ଓ ଅନୁଧାବନକାରୀମାନେ ତାହାଙ୍କୁ ଧରିବାର ଆଶଙ୍କା ହେଲା । ଏହି ସମୟରେ "ହୋ ନୀଲା ଘୋଡ଼ାକା ସଓୟାର" ସ୍ୱଜାତୀୟ ଭାଷାରେ ଓ ସ୍ୱଜାତୀୟ ସ୍ୱରରେ ଉଚ୍ଚାରିତ ଏହି ପ୍ରୀତିଯୁକ୍ତ ନମସ୍କାରସୂଚକ ବାଣୀ ଶୁଣି ପ୍ରତାପ ପଛକୁ ଫେରି ଦେଖିଲେ ଯେ ଜଣେ ମାତ୍ର ଅଶ୍ୱାରୋହୀ ଆସୁଅଛନ୍ତି, ଏବଂ ସେ ତାଙ୍କରି କନିଷ୍ଠ ଭ୍ରାତା—ଶାକ୍ତ ।

GPNanda Colln., Digitized by srujanika@gmail.com

ପ୍ରତାପଙ୍କ ପ୍ରତି ତାଙ୍କର ବ୍ୟକ୍ତିଗତ ବୈରଭାବ ଥିଲା । ତେଣୁ ସେ ମୋଗଲ ପକ୍ଷ ଗ୍ରହଣ କରିଥିଲେ । କିନ୍ତୁ ଯେତେବେଳେ ଶାକ୍ତ ଦେଖିଲେ, ନୀଳ ଅଶ୍ୱ ଚୈତକ ଏକାକୀ ପଳାୟନ କରୁଅଛି, ତେତେବେଳେ ପ୍ରତିହିଂସାଗ୍ନି ନିର୍ବାପିତ ହେଲା, ହୃଦୟ ଅମୃତମୟ ଭ୍ରାତୃ ସ୍ନେହରସରେ ପରିପୂର୍ଣ୍ଣ ହେଲା ଓ ପୂର୍ବ ସ୍ମୃତି ସକଳ ସ୍ମୃତି ପଟରେ ଉଦିତ ହେଲା । ସେ ଅନୁଧାବନକାରୀ ଦ୍ୱୟଙ୍କୁ ହତ୍ୟା କଲେ ଓ ଅଶ୍ରୁସିକ୍ତ ନୟନରେ ପ୍ରତାପଙ୍କୁ ଆଲିଙ୍ଗନ କଲେ । ଏହିଠାରେ ଚୈତକର ମୃତ୍ୟୁ ହେଲା । ତାହାର ମୃତ୍ୟୁକୁ ଚିରସ୍ମରଣୀୟ କରଣାର୍ଥ ଏହି ସ୍ଥାନରେ ଗୋଟିଏ ଚୌତରା ନିର୍ମିତ ହେଲା । (ଢାଲେଲର ଅନତି ଦୂରେ—"ଚୈତକ କା ଚୌତରା") ଏହି ଚିତାକର୍ଷକ ଦୃଶ୍ୟ ମିବାର ରାଜଧାନୀର ଅନେକ ଗୃହର କାନ୍ଥରେ ଚିତ୍ରିତ ହୋଇଥିବାର ଦେଖାଯାଏ ।

ଏହି ମିଳନ ଓ ସ୍ନେହ ସମ୍ଭାଷଣ ଅଳ୍ପକ୍ଷଣ ସ୍ଥାୟୀ ହୋଇଥିଲା । ଶାକ୍ତ ସେଲିମଙ୍କ ନିକଟକୁ ପ୍ରତ୍ୟାବର୍ତ୍ତନ କଲେ । ସକଳ ବୃତ୍ତାନ୍ତ ଅବଗତ ହୋଇ ସେଲିମ ଶାକ୍ତଙ୍କୁ କାର୍ଯ୍ୟଚ୍ୟୁତ କଲେ । ଏହିପରି ଅପମାନିତ ହୋଇ ଶାକ୍ତ ପ୍ରତାପଙ୍କ ନିକଟକୁ ଫେରି ଆସିଲେ ଓ ଉଦୟପୁରଠାରେ ତାଙ୍କ ସହିତ ମିଳିତ ହେଲେ । ପ୍ରତାପ ତାହାଙ୍କୁ ସାଦରେ ଗ୍ରହଣ କଲେ ।

ଏହି ମହା ସଂଗ୍ରାମରେ ପ୍ରତାପଙ୍କର ଯେଉଁ କ୍ଷତି ହୋଇଥିଲା, ତାହା ବର୍ଣ୍ଣନାତୀତ । ଯେଉଁ ଚତୁର୍ଦ୍ଦଶ ସହସ୍ର ରାଜପୁତ ସୈନ୍ୟଙ୍କ ରକ୍ତରେ ହଳଦୀଘାଟ ଗିରିସଂକଟ ପ୍ଲାବିତ ହୋଇଥିଲା, ସେମାନଙ୍କ ମଧ୍ୟରେ ସ୍ୱୟଂ ରାଣାଙ୍କର ନିକଟତମ ଜ୍ଞାତି ପଞ୍ଚଶତ ଜଣ ଥିଲେ । ଯେଉଁ ଗୋଆଲିୟର ଅଧିପତି ବାବରଙ୍କ ଦ୍ୱାରା ବିତାଡିତ ଓ ନିର୍ବାସିତ ହେଲା ଦିବସରୁ ମିବାରରେ ଆଶ୍ରୟ ଗ୍ରହଣ କରିଥିଲେ ଓ ଯାହାଙ୍କ ଉପଯୁକ୍ତ ସତ୍କାର ଲାଗି ମିବାରାଧିପତିମାନେ ସର୍ବଦା ମୁକ୍ତହସ୍ତ ଥିଲେ, ସେହି ବୀରଶ୍ରେଷ୍ଠ ରାମସାହ ସ୍ୱ ପୁତ୍ର ସହ ଓ ନିଜର ସାର୍ଦ୍ଧତ୍ରିଂଶତ ସାହସିକ ଅନୁଚରବର୍ଗ ସମେତ ନିଜ ଜୀବନ ବିନିମୟରେ ସେହିଦିନ କୃତଜ୍ଞତା-ଋଣ ପରିଶୋଧ କରିଥିଲେ । ପୁଣି ପ୍ରତାପଙ୍କ ପ୍ରାଣରକ୍ଷକ ପ୍ରଭୁଭକ୍ତ ମହାବୀର ମାନା ଓ ତାଙ୍କର ସାର୍ଦ୍ଧ ଏକଶତ ସାହସିକ ଅନୁଚରବର୍ଗ ସ୍ୱ ସ୍ୱ ଜୀବନ ସମରାନଳରେ ଆହୂତି ପ୍ରଦାନ କରିଥିଲେ ଏବଂ ମିବାର ରାଜ୍ୟର ପ୍ରତ୍ୟେକ ପରିବାର ଶୋକସାଗରରେ ନିମଗ୍ନ ହୋଇଥିଲା ।

ପ୍ରତାପ ଏହି ବିପୁଳ କ୍ଷତି ଦ୍ୱାରା ଲେଶମାତ୍ର ବିଚଳିତ ନ ହୋଇ ଅଟଳ ଭାବରେ ଅଗ୍ରସର ହେବାକୁ ଲାଗିଲେ । ବର୍ଷା ଋତୁରେ ପ୍ରତାପ କିଛିକାଳ ବିଶ୍ରାମ ପାଇଥିଲେ ସତ୍ୟ, କିନ୍ତୁ ବସନ୍ତର ଆଗମନ ସଙ୍ଗେ ସଙ୍ଗେ ସେ ପୁନର୍ବାର ଶତ୍ରୁ ସମ୍ମୁଖୀନ ହେଲେ ଓ ପୁନର୍ବାର ୧୫୭୭ ସାଲରେ ପରାସ୍ତ ହେଲେ । ତତ୍‌ପରେ କମଲମୀରରେ ଆଶ୍ରୟ ଗ୍ରହଣ କରି ସେଠାରେ ଦୀର୍ଘକାଳ ପର୍ଯ୍ୟନ୍ତ ଶତ୍ରୁର ଚେଷ୍ଟା ବିଫଳ କଲେ । ମାତ୍ର ଅବଶେଷରେ ତାହାଙ୍କୁ କମଲମୀର ପରିତ୍ୟାଗ କରିବାକୁ ପଡିଥିଲା । ତତ୍‌ପରେ ଚଣ୍ଡ (?) ନାମକ ନଗରରେ ଆଶ୍ରୟ ନେଲେ । ଏ ସ୍ଥାନ ସୁଦ୍ଧା ଅଳ୍ପ ଦିନରେ ଶତ୍ରୁ କରଗତ ହେଲା । ରାଜା ମାନସିଂହ ଓ ମହାବତ୍ ଖାଁଙ୍କ ଚାଳିତ ମୋଗଲ ସୈନ୍ୟ ଏହି ପ୍ରକାରେ ପ୍ରତାପଙ୍କୁ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଅନୁଧାବନ କରିବାକୁ ଲାଗିଲେ ଓ କ୍ରମେ କ୍ରମେ ମିବାରର ପ୍ରଧାନ ଦୁର୍ଗ ଓ ସ୍ଥାନ ଅଧିକାର କଲେ । ଏହିପରି

GPNanda Colln., Digitized by srujanika@gmail.com

ଚତୁର୍ଦ୍ଦିଗରେ ଶତ୍ରୁକର୍ତ୍ତୃକ ବେଷ୍ଟିତ, ପ୍ରତ୍ୟେକ ଆଶ୍ରୟ ସ୍ଥାନରୁ ବିତାଡ଼ିତ ଏକ ପର୍ବତରୁ ପର୍ବତାନ୍ତରକୁ, ଏକ ବନରୁ ବନାନ୍ତରକୁ ଅନୁଧାବିତ ହେଲେ ସୁଦ୍ଧା ସେ ଅଜେୟ ହୃଦୟରେ ନିରୁତ୍ସାହ ବା ଗ୍ଲାନି ସ୍ଥାନ ପାଇ ନ ଥିଲା । ଅବଶେଷରେ ସେ ଏକ ପ୍ରକାର ଗରିଲା ଯୁଦ୍ଧ ଆରମ୍ଭ କରି ସମୟ ସମୟରେ ଶତ୍ରୁମାନଙ୍କୁ ଏପରି ଅତର୍କିତ ଭାବରେ ଓ ଅସାବଧାନ ଅବସ୍ଥାରେ ଆକ୍ରମଣ କରୁଥିଲେ ଯେ ଅର୍ଥଗୃଧ୍ନୁ (mercenary) ମୋଗଲ ସୈନ୍ୟମାନେ ଅତୀବ ବିମୁଖ ଓ ବିରକ୍ତ ହୋଇପଡୁଥିଲେ । ପୁଣି ବର୍ଷାଗମ ହେତୁରୁ ପ୍ରତାପଙ୍କୁ କିଞ୍ଚିତ ସମୟ ମିଳିଥିଲା ।

ବର୍ଷ ପରେ ବର୍ଷ ଏହିପରି ଅତୀତ ହେବାକୁ ଲାଗିଲା । ଦୁଃଖ ରଜନୀ କ୍ରମେ ଗାଢ଼ତର ଆକାର ଧାରଣ କଲା । ଏହି ସମୟରେ ତାଙ୍କ ପରିବାର ତାଙ୍କର ପ୍ରଧାନ ଚିନ୍ତାର ବିଷୟ ଥିଲା । ପ୍ରତି ମୁହୂର୍ତ୍ତ ସେମାନଙ୍କର ଶତ୍ରୁକର୍ତ୍ତୃକ ବନ୍ଦୀ ହେବାର ଭୟ ହେଉଥିଲା । ଏକଦା ସେମାନେ ଏହିପରି ବନ୍ଦୀ ହୋଇ ଯାଇଥାନ୍ତେ, କିନ୍ତୁ ବିଶ୍ୱସ୍ତ ଭୀଲମାନେ ସେମାନଙ୍କୁ ରକ୍ଷା କଲେ । ମିବାର ରଣାଙ୍କ ଶିଶୁ ସନ୍ତାନମାନଙ୍କୁ ବ୍ୟାଘ୍ର ଭଲ୍ଲୁକାଦି ହିଂସ୍ର ଜନ୍ତୁମାନଙ୍କ କରାଳ କବଳରୁ ରକ୍ଷା କରଣାର୍ଥ କି ଉପାୟ ଅବଲମ୍ବିତ ହେଉଥିଲା, ତାହା କେହି କଳ୍ପନା କରି ପାରିବେ କି ? ବଡ଼ ବଡ଼ ଗଛରେ ଲୌହ ଦଣ୍ଡ ଓ ଲୌହ ଶୃଙ୍ଖଳ ବିଦ୍ଧ କରି ବେତ ନିର୍ମିତ ଟୋକେଇମାନ ଝୁଲାଇ ରାଜଶିଶୁମାନଙ୍କୁ ତହିଁରେ ରଖା ଯାଉଥିଲା । ଏହି ଲୌହ ଦଣ୍ଡ ଓ ଶୃଙ୍ଖଳମାନ ଅଦ୍ୟାପି ମିବାର ରାଜ୍ୟର କେତେକ ବୃକ୍ଷରେ ଦୃଷ୍ଟିଗୋଚର ହୁଏ ଓ ରାଜପରିବାରର ତଦାନୀନ୍ତନ ହୃଦୟ ବିଦାରକ ଅବସ୍ଥାର ସାକ୍ଷ୍ୟ ପ୍ରଦାନ କରେ । ପ୍ରତାପ ଏସବୁ ଦୃଶ୍ୟ ପ୍ରତ୍ୟହ ପ୍ରତ୍ୟକ୍ଷ କରୁଥିଲେ ହେଁ ଓ ଅନ୍ୟାନ୍ୟ ଅଗଣିତ ଅଭାବନୀୟ ଦୁଃଖ, ଯନ୍ତ୍ରଣା ମଧ୍ୟରେ କାଳତିପାତ କରୁଥିଲେହେଁ ତାହାଙ୍କର ଧୈର୍ଯ୍ୟ ମୁହୂର୍ତ୍ତକ ପାଇଁ ଟଳି ନଥିଲା । ସେ ଅମ୍ଳାନ ବଦନରେ କେବଳ ଯେ ଏସବୁ ସହ୍ୟ କରୁଥିଲେ ତାହା ନୁହେଁ, ନିଜ ବଂଶର ପୁରୁଷାନୁଗତ ପବିତ୍ର ରାଜକୀୟ ବିଧି ଓ କ୍ରିୟା କଳାପ ବଜାୟ ରଖିବାକୁ ସତତ ଯତ୍ନଶୀଳ ଥିଲେ । ଦିନେ ଅନ୍ୟ କୌଣସି ଖାଦ୍ୟ ନ ମିଳିବାରୁ କେବଳ କେତେଗୁଡ଼ିଏ ଫଳ ରଣାଙ୍କର ମୁଣ୍ଡୋହି ପକାଶେ ସଂଗୃହୀତ ହୋଇଅଛି । ରଣା ପ୍ରସନ୍ନ ଚିତ୍ତରେ ମଣୋହିରେ ଉପବିଷ୍ଟ ହୋଇ ସମସ୍ତ କୌଳିକ ବିଧି ଅନୁସରଣ ପୂର୍ବକ ଯୋଗ୍ୟତମ ବ୍ୟକ୍ତିକୁ 'ଦୂନା' ପ୍ରଦାନ କଲେ ଓ ତାହା କେବଳ କେତେଗୁଡ଼ିଏ ଫଳ ହେଲେହେଁ ଯଥାବିଧି ଭକ୍ତି ସହକାରେ ଗୃହୀତ ହେଲା । ଆକବରଙ୍କ ଗୁପ୍ତଚର ଏହିସବୁ ଦେଖି ଯାଇ ତାଙ୍କୁ ସମସ୍ତ ବିବୃତ କଲା । ଗୁଣଗ୍ରାହୀ ଆକବର ଋତୁଣ ଅନମନୀୟ ମହାଶୟତାରେ (Inflexible magnaminity) ମୋହିତ ହୋଇଥିଲେ ଓ ତାହାର ଭୂୟସୀ ପ୍ରଶଂସା କରିଥିଲେ । ଏଥିରେ ରାଜସ୍ଥାନର ପ୍ରତ୍ୟେକ ରାଜପୁତ ହୃଦୟରେ ପ୍ରତାପଙ୍କ ପ୍ରତି ଆନ୍ତରିକ ଅକୃତ୍ରିମ ଭକ୍ତି ଜାତ ହୋଇଥିଲା । ଏହି ଉପଲକ୍ଷରେ ଜନୈକ ରାଜପୁତ ବୀର ଓ ଆକବରଙ୍କ ମୁଖ୍ୟ ସେନାପତି ପ୍ରତାପଙ୍କ ଏ ରୂପ ଦୃଷ୍ଟାନ୍ତରେ ମୁଗ୍ଧ ହୋଇ ତାଙ୍କ ନିକଟକୁ କେତେକ ପଙ୍କ୍ତି ପଦ୍ୟ ଲେଖି ପଠାଇଲେ ତହିଁର ଅର୍ଥ ଏହି—"All is unstable in this world, land and wealth will disappear, but the virtue of a great name lives for ever. Putto (Pratap) abandoned wealth and land, but never bowed his head, alone, of all the princes of Hind. He preserved the honour of his race."

GPNanda Colln., Digitized by srujanika@gmail.com

ଯେତେବେଳେ ଘୋର ବିପଦରେ ପଡି ହୃଦୟ ମନ ଅବସନ୍ନ ହେଉଥାଏ, ଯେତେବେଳେ ଭୀଷଣ ଦୁଃଖ ରଜନୀ ମଧ୍ୟରେ ଚତୁର୍ଦ୍ଦିଗରେ ନାନା ପ୍ରକାର ଭୟ ବିଭୀଷିକା ଦେଖି ଦୁର୍ବଳ ମାନବ ହତାଶ, ହତୋତ୍ସାହ ଓ ହତୋଦ୍ୟମ ହୋଇ ନିର୍ବେଦ-ସାଗରରେ ମଗ୍ନ ପ୍ରାୟ ହେଉଥାଏ, ତେତେବେଳେ ପ୍ରତାପଙ୍କ କଥା ମନେପଡ଼ିଲେ ହୃଦୟ ନବ ଆଶାରେ ଆଶାନ୍ୱିତ, ନବ ବଳରେ ବଳୀୟାନ ହୋଇ ନବ ଉତ୍ସାହରେ ନାଚିଉଠେ ନାହିଁ କି ?

"କ୍ଷଣମିହ ସଜ୍ଜନସଙ୍ଗତିରେକା
ଭବତି ଭବାର୍ଣ୍ଣବତରଣେ ନୌକା ।"

"Lives ot great men all remind us
we can make our lives sublime."

ଏହି ସାଧୂକ୍ତି ଗୁଡ଼ିକର ସତ୍ୟତା ଏହିଠାରେ ଅତି ସ୍ପଷ୍ଟ ରୂପେ ପ୍ରମାଣିତ ହୁଏ ।

ନିଜର ପ୍ରାଣାଧିକା ପତ୍ନୀ ଓ ଶିଶୁ ସନ୍ତାନମାନଙ୍କର ବିପଦ ଓ କଷ୍ଟ ଦେଖି ସେ ଅନେକ ସମୟରେ ଉନ୍ମତ୍ତ ପ୍ରାୟ ହେଉଥିଲେ । ମୋଗଲମାନେ ଏପରି ଭାବରେ ତାହାଙ୍କୁ ଅନୁଧାବନ କରୁଥିଲେ ଯେ, ଅନେକ ଥର ପ୍ରସ୍ତୁତ ଖାଦ୍ୟ ପରିତ୍ୟାଗ କରି ପଳାୟନ କରିବାକୁ ବାଧ୍ୟ ହୋଇଥିଲେ । ତାଙ୍କର ଶିଶୁ ସନ୍ତାନମାନେ ଖାଦ୍ୟ ସକାଶେ ତାଙ୍କ ଚତୁର୍ଦ୍ଦିଗରେ କ୍ରନ୍ଦନ କରୁଥିଲେ । ପୁଣି ଏକ ସମୟରେ ତାଙ୍କର ରାଣୀ ଓ ପୁତ୍ରବଧୂ ଆରଣ୍ୟ ତୃଣଶସ୍ୟରୁ ଅଟାରେ କେତେଗୁଡ଼ିଏ ପିଷ୍ଟକ ପ୍ରସ୍ତୁତ କରି ଶିଶୁମାନଙ୍କୁ କେତେକ ଦେଲେ ଓ ଆଉ କେତେକ ଭବିଷ୍ୟତ ସକାଶେ ରଖିଦେଲେ । ଇତି ମଧ୍ୟରେ ଗୋଟିଏ ବନ-ମାର୍ଜାର ଆସି ଏହି ରକ୍ଷିତ ଖାଦ୍ୟ ଘେନି ପଳାୟନ କରିବାରୁ ରାଣାଙ୍କ ଶିଶୁ-କନ୍ୟା ଘୋର ଚିତ୍କାର କରି ଉଠିଲା । ଏହି ମୁହୂର୍ତ୍ତ ପର୍ଯ୍ୟନ୍ତ ପ୍ରତାପଙ୍କ ଧୈର୍ଯ୍ୟ ଅଟଳ ରହିଥିଲା, କାରଣ ଯେପରି ନେପୋଲିଅନ କହୁଥିଲେ "I am born to suffer." ସେ ମଧ୍ୟ ସେହିପରି ଭାବୁଥିଲେ ଯେ କଷ୍ଟ ସହିବା ଲାଗି ରାଜପୁତର ଜନ୍ମ । କିନ୍ତୁ ଖାଦ୍ୟ ପାଇଁ ଆପଣାର ପ୍ରାଣାଧିକ ଶିଶୁ ସନ୍ତାନମାନଙ୍କର କ୍ରନ୍ଦନରେ ସେ ଏକାବେଳକେ ଅଭିଭୂତ ହୋଇପଡ଼ିଲେ ଓ ତାଙ୍କର କଷ୍ଟର କିଞ୍ଚିତ୍ ଲାଘବ କରିବା ସକାଶେ ଆକବରଙ୍କଠାକୁ ପତ୍ର ଲେଖିଲେ ।

ଆକବର ଏହି ପତ୍ରରୁ ଅଧୀନତା ସ୍ୱୀକାରର ଆଭାସ ପାଇ ନିରତିଶୟ ଆନନ୍ଦିତ ହୋଇଥିଲେ । କିନ୍ତୁ ତାଙ୍କ ଆନନ୍ଦ ଅଧିକ ସମୟ ସ୍ଥାୟୀ ହେଲା ନାହିଁ । ଦିଲ୍ଲୀ ରାଜଦରବାରରେ ଥିବା ପୃଥ୍ୱୀରାଜ-ନାମା ଜନୈକ ତେଜସ୍ୱୀ ରାଜପୁତ ବୀର ଏହି ସମ୍ବାଦରେ ଅତୀବ ମର୍ମାହତ ହୋଇ ରାଣାଙ୍କ ନିକଟକୁ ଅତ୍ୟନ୍ତ ଉତ୍ତେଜନାପୂର୍ଣ୍ଣ ଖଣ୍ଡିଏ ପତ୍ର ଲେଖି ପଠାଇଲେ । ଏହି ପତ୍ରରେ ଅନ୍ୟାନ୍ୟ କଥା ମଧ୍ୟରେ ଏହି କଥା ଥିଲା ଯେ; "ରାଜପୁତ ଜାତିର ପୁନରୁଦ୍ଧାର ଓ ତାହାର ଗୌରବ ଓ ପବିତ୍ରତାର ପୁନରାବିର୍ଭାବ ନିମିତ୍ତ ସମସ୍ତେ ସତୃଷ୍ଣ ନୟନରେ ପ୍ରତାପଙ୍କ ଆଡ଼କୁ ଅନାଇ ବସିଅଛନ୍ତି ।"

ଏହି ପତ୍ର ପାଇ ତାଙ୍କର ସମସ୍ତ ଦୁର୍ବଳତା ଅପସରିତ ହେଲା; ପୂର୍ବ ଧୈର୍ଯ୍ୟ, ପୂର୍ବ ଅଧ୍ୟବସାୟ ସମସ୍ତ କ୍ଷଣକ ମଧ୍ୟରେ ଫେରି ଆସିଲା ଓ ଉତ୍ସାହ-ବହ୍ନି ଉଜ୍ଜ୍ୱଳତର ଭାବରେ ପ୍ରଜ୍ୱଳିତ ହେବାକୁ ଲାଗିଲା । ସେ ଏହି ଦୃଢ଼ନିଶ୍ଚୟ

GPNanda Colln., Digitized by srujanika@gmail.com

କଲେ କି, ବରଂ ରାଜ୍ୟ ଛାଡ଼ି ସ୍ଥାନାନ୍ତରରେ ନିର୍ବାସନ ଶ୍ରେୟସ୍କର, କିନ୍ତୁ ଧର୍ମ ପରିତ୍ୟାଗ କଦାପି ଉଚିତ ନୁହେଁ । ସିନ୍ଧୁ ନଦ ନିକଟରେ ମରୁଭୂମି ମଧ୍ୟରେ ସୋଗୀ ନାମକ ଗୋଟିଏ ସ୍ଥାନ ଅଛି । ପ୍ରତାପ ସେହି ସ୍ଥାନରେ ଜୀବନଯାପନ କରିବାକୁ ସ୍ଥିର କଲେ । ଏହି ଉଦ୍ଦେଶ୍ୟରେ ସେ ନିଜ ଅନୁଚରବର୍ଗଙ୍କ ସହିତ ସିନ୍ଧୁନଦ ଅଭିମୁଖରେ ଯାତ୍ରା କଲେ ଏବଂ ଆରାବଲ୍ଲୀ ଅତିକ୍ରମ କରି ମରୁଭୂମିର ନିକଟବର୍ତ୍ତୀ ହେଲେଣି, ଏହି ସମୟରେ ଗୋଟିଏ ଘଟନା ଘଟିଲା, ଯାହା ତାହାଙ୍କ ଜୀବନର ଗତି ଏକାବେଳକେ ଫେରାଇଦେଲା । ଏହିଠାରେ ଧର୍ମର ଅଦ୍ଭୁତ ରହସ୍ୟମୟ ଶକ୍ତିର ଜ୍ୱଳନ୍ତ ଉଦାହରଣ । ମାନବ ଧର୍ମକୁ ରକ୍ଷା କଲେ, ଧର୍ମ ମାନବକୁ ନିଶ୍ଚୟ ରକ୍ଷା କରନ୍ତି । କବିବାଣୀ ଅଛି:—

Or, if virtue feeble were
Heaven itself would stoop to her.

ଅର୍ଥାତ୍ ଧର୍ମପଥରେ ରହି ତୁମ୍ଭର କର୍ତ୍ତବ୍ୟ ଯଥାସାଧ୍ୟ ପାଳନ କରୁ କରୁ ଯେବେ ଦେଖାଯିବ ଯେ, ତୁମ୍ଭେ ତୁମ୍ଭର ଶତ ଚେଷ୍ଟା ସତ୍ତ୍ୱେ ତୁମ୍ଭ ଲକ୍ଷ୍ୟ ସ୍ଥାନରେ ପହଞ୍ଚି ପାରୁନାହଁ, ତେବେ ଏହା ନିଶ୍ଚିତ ଯେ ସ୍ୱୟଂ ଭଗବାନ୍ ସ୍ୱର୍ଗ ରାଜ୍ୟରୁ ହାତ ବଢ଼ାଇ ତୁମ୍ଭଙ୍କୁ ଅଦୃଶ୍ୟ ଭାବରେ ସାହାଯ୍ୟ କରିବେ । ପ୍ରତାପଙ୍କ ଜୀବନର ବର୍ତ୍ତମାନ ମୁହୂର୍ତ୍ତରେ ଏହି ସତ୍ୟର ଉଜ୍ଜ୍ୱଳ ଦୃଷ୍ଟାନ୍ତ ଲକ୍ଷିତ ହେଲା । ସ୍ୱଦେଶ ଓ ସ୍ୱଧର୍ମର ରକ୍ଷା ସକାଶେ ଯଥାସାଧ୍ୟ ଚେଷ୍ଟା କରି ସ୍ୱଦେଶ ରକ୍ଷାରେ ଅସମର୍ଥ ହୋଇ ଯେତେବେଳେ ସେ ଧର୍ମରକ୍ଷା ସକାଶେ ସ୍ଥାନାନ୍ତରକୁ ଯାଉଅଛନ୍ତି, ତେତେବେଳେ ଦୟାମୟ ପରମେଶ୍ୱର ଅତର୍କିତ ଭାବରେ ଏକ ଅପ୍ରତ୍ୟାଶିତ ସ୍ଥାନରୁ ସାହାଯ୍ୟ ଆଣି ପ୍ରଦାନ କଲେ । ପ୍ରତାପ ଯେତେବେଳେ ମରୁପ୍ରାନ୍ତରରେ ଉପସ୍ଥିତ, ତେତେବେଳେ ତାଙ୍କର ପ୍ରଭୁଭକ୍ତ ମନ୍ତ୍ରୀ ବହୁକାଳରୁ ପୂର୍ବପୁରୁଷ ସଞ୍ଚିତ ଆପଣାର ବିପୁଳ ଅର୍ଥରାଶି ରଣାଙ୍କ ହସ୍ତରେ ଅର୍ପଣ କଲେ । ଏହି ମନ୍ତ୍ରିଙ୍କ ନାମ ଭାମ ସାହ ଓ ମିବାର ରକ୍ଷାକର୍ତ୍ତା ବୋଲି ଏହି ନାମ ମିବାରରେ ଚିରସ୍ମରଣୀୟ ।

ଏହି ବିପୁଳ ଅର୍ଥ ଲାଭ କରିବାରୁ ସ୍ୱଦେଶକୁ ପୁନରୁଦ୍ଧାର କରିବାର ନବୀନ ଆଶା ତାଙ୍କ ମନରେ ପୁନର୍ବାର ଉଦ୍ଦୀପିତ ହେଲା ।

ପୁନର୍ବାର ସାହସ ଅବଲମ୍ବନ କରି ସ୍ୱକୀୟ ମୁଷ୍ଟିମେୟ ଅନୁଚର ବର୍ଗଙ୍କୁ ସଂଗ୍ରହ କଲେ ଓ ମୋଗଲ ସୈନ୍ୟକୁ ଦେବୀର (Dewir)ଠାରେ ଅତି ଅତର୍କିତ ଭାବରେ ଭେଟିଲେ । ସେଠାରେ ମୋଗଲ ସୈନ୍ୟଙ୍କୁ ପରାସ୍ତ କରି କମଳମୀର ଆକ୍ରମଣ କଲେ ଓ ସେହି ଦୁର୍ଗ ହସ୍ତଗତ କଲେ । ଅଳ୍ପକାଳ ମଧ୍ୟରେ ଚିତୋର, ଆଜମୀର ଓ ମଙ୍ଗଳଗଡ଼ ଭିନ୍ନ ସମଗ୍ର ମିବାର ରାଜ୍ୟ ପୁନର୍ଦଖଲ କଲେ । ସ୍ୱୀୟ ଧର୍ମ ଓ ଅଧ୍ୟବସାୟ ବଳରୁ ପ୍ରତାପ ପୁନର୍ବାର ମିବାର ରାଜ୍ୟର ଅଧୀଶ୍ୱର ହୋଇ ଜୀବନର ଅବଶିଷ୍ଟ ଅଂଶ ଶାନ୍ତିରେ ଅତିବାହିତ କଲେ ।

ମାତ୍ର ବହୁକାଳ ବ୍ୟାପୀ ଅକଥନୀୟ ଶାରୀରିକ କଷ୍ଟ ଭୋଗ କରିଥିବାରୁ ପ୍ରତାପ ଅତ୍ୟନ୍ତ ଦୁର୍ବଳ ହୋଇପଡ଼ିଲେ ଓ ଅଳ୍ପକାଳ ମଧ୍ୟରେ ମାନବଲୀଳା ସମ୍ବରଣ କଲେ । ତାଙ୍କର ବୈଚିତ୍ର୍ୟମୟ ବୀର ଜୀବନର ଶେଷ ମୁହୂର୍ତ୍ତର ଦୃଶ୍ୟ ଅତୀବ ଚମତ୍କାର ଓ ଚିତ୍ତାକର୍ଷକ । ସ୍ୱଦେଶପ୍ରେମ ଯେ ତାଙ୍କର ମୂଳମନ୍ତ୍ର ଥିଲା, ତହିଁର ଜାଜ୍ଜଲ୍ୟମାନ ପ୍ରମାଣ ଏହି ଅନ୍ତିମ ମୁହୂର୍ତ୍ତରେ ମଧ୍ୟ ମିଳିଅଛି ।

GPNanda Colln., Digitized by srujanika@gmail.com

ପ୍ରତାପ ମୃତ୍ୟୁ ଶଯ୍ୟାରେ ଶାୟିତ । ତାଙ୍କର ଅନେକ ବିଶ୍ୱସ୍ତ ଅନୁଚର, ଅନ୍ୟାନ୍ୟ ରାଜପୁତ ବୀରମାନେ ଶଯ୍ୟାର ଚତୁର୍ଦ୍ଦିଗରେ ଉପସ୍ଥିତ । ଏହି ସମୟରେ ସେ ସ୍ୱୀୟ ପୁତ୍ର ଓ ଉତ୍ତରାଧିକାରୀ ଅମର ସିଂହଙ୍କୁ ଶପଥ କରାଇଲେ—ସ୍ୱଦେଶବୈରୀ ବିରୁଦ୍ଧରେ ଯାବଜ୍ଜୀବନ ଅସ୍ତ୍ର ଧାରଣ କରିବାକୁ ହେବ । କିନ୍ତୁ ତଥାପି ତାଙ୍କ ମନ ସନ୍ତୁଷ୍ଟ ହେଲା ନାହିଁ । ତାଙ୍କ ଭାବଭଙ୍ଗୀରୁ ଜଣାଗଲା ଯେ, ସେ ବିଶେଷ ମାନସିକ କଷ୍ଟ ଭୋଗ କରୁଅଛନ୍ତି । ସେ କହିଲେ, "ମୋହର ଦେଶ ତୁର୍କି ହସ୍ତରେ ଅର୍ପିତ ହେବନାହିଁ, ଏଥିର ସନ୍ତୋଷଜନକ ପ୍ରମାଣ ନ ପାଇବାରୁ ପ୍ରାଣଟା ଛାଡ଼ି ଯାଉନାହିଁ" ଏବଂ ସେହି ମୁମୂର୍ଷୁ ଅବସ୍ଥାରେ ଗୋଟିଏ ଘଟନା ବର୍ଣ୍ଣନ କଲେ ଯାହା ସ୍ମରଣ କରି ସେ ଅମର ସିଂହଙ୍କଠାରେ ସେତେଦୂର ବିଶ୍ୱାସ କରିପାରୁ ନଥିଲେ । ଘଟଣାଟି ଏହି:— ତାଙ୍କର ଅରଣ୍ୟବାସ ସମୟରେ ଏକଦା ପେଶୋଲା ନଦୀ ତୀରରେ କେତେ-ଗୁଡ଼ିଏ କୁଟୀର ନିର୍ମାଣ ପୂର୍ବକ ପ୍ରତାପ ଓ ତାଙ୍କ ଅନୁଚରବର୍ଗ ବାସ କରୁଥିଲେ । ଦିନେ ଅମର ଏହି କୁଟୀରରୁ ବାହାରି ଆସୁ ଆସୁ ତାଙ୍କ ପଗଡ଼ିରେ ଖଣ୍ଡିଏ ବାଉଁଶ ଲାଗିଲା । ଅମର ତହିଁରେ ବିରକ୍ତ ଓ ରାଗାନ୍ୱିତ ହୋଇ ସେହି ବାଉଁଶ ଖଣ୍ଡି ଓଟାରି ପକାଇଲେ । ପୁତ୍ରର ଏପରି ଧୈର୍ଯ୍ୟହୀନତା ଦେଖି ପ୍ରତାପ ମର୍ମାହତ ହେଲେ ଓ ସେହିଦିନଠାରୁ ତାଙ୍କର ଧାରଣା ଜନ୍ମିଲା କି ଅମର ସ୍ୱଦେଶ ରକ୍ଷା କାର୍ଯ୍ୟରେ ପ୍ରୟୋଜନୀୟ କଷ୍ଟ ସହିବାକୁ ଇଚ୍ଛୁକ ହେବେ ନାହିଁ । ମୁମୂର୍ଷୁ ରଣା କହି ଉଠିଲେ, "ଏହି ନିମ୍ନ କୁଟୀର ଗୁଡ଼ିକ ସ୍ଥାନରେ ଆଡ଼ମ୍ବରପୂର୍ଣ୍ଣ ଅଟ୍ଟାଳିକାମାନ ବିରାଜମାନ ହେବ, ବିଳାସିତା ଆସି ପ୍ରବେଶ କରିବ ଏବଂ ସ୍ୱଦେଶର ଯେଉଁ ସ୍ୱାଧୀନତା ଶ୍ରୀ ରକ୍ଷଣାର୍ଥ ଆମ୍ଭେମାନେ ସନିତପାତ କରିଅଛୁ, ତାହା ବିଳାସିତା—ବେଦିରେ ବଳିଦାନ କରାଯିବ ଏବଂ ତୁମେ ମୋହର ଦଳପତିମାନେ ଅମର ସିଂହଙ୍କ ଏଇ ବିଷମୟ ଦୃଷ୍ଟାନ୍ତ ଅନୁକରଣ କରିବ ।" ଏହା ଶୁଣି ଉପସ୍ଥିତ ରାଜପୁତ ବୀରମାନେ ଶପଥପୂର୍ବକ କହିଲେ, "ମିବାର ରାଜ୍ୟର ସ୍ୱାଧୀନତାଲକ୍ଷ୍ମୀର ପୁନରୁଦ୍ଧାର ନ ହେବା ପର୍ଯ୍ୟନ୍ତ ଆମ୍ଭେମାନେ ଅଟ୍ଟାଳିକା ତୋଳାଇ ଦେବୁନାହିଁ ।" ପ୍ରତାପଙ୍କ ଆତ୍ମା ଏହି ସାନ୍ତ୍ୱନା ବାଣୀରେ ସନ୍ତୁଷ୍ଟ ହୋଇ ଆନନ୍ଦ ସହକାରେ ଇହଲୋକରୁ ପ୍ରସ୍ଥାନ କଲା ।

ଅଶେଷ ସଦ୍‌ଗୁଣ ବିଧାନ କ୍ଷତ୍ରିୟ କୁଳାବତଂସ ମିବାର ଗୌରବ ମହାତ୍ମା ପ୍ରତାପଙ୍କ ବିଚିତ୍ର ଘଟନାପୂର୍ଣ୍ଣ ଜୀବନକୁ ବିବିଧ ସତ୍‌ଶିକ୍ଷା ଓ ସାଧୁ ଦୃଷ୍ଟାନ୍ତର ଆକର କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ଅମୂଲ୍ୟ ଜୀବନକୁ ଯେ ଯେଉଁ ଭାବରେ ଆଲୋଚନା କରନ୍ତୁ ତହିଁର ତଦ ଅନୁରୂପ ଶିକ୍ଷାଲାଭ କରିଥିଲେ । "where there is a will there is a way." (ମନବଳର ଜୟ ସୁନିଶ୍ଚିତ) ଏହି ସାଧୁକ୍ତିର ଉଦାହରଣ ଖୋଜିବା ପାଇଁ ଆମ୍ଭେମାନେ ନେପୋଲିୟନଙ୍କ ପର୍ଯ୍ୟନ୍ତ ଦୌଡ଼ି ଯାଇଥାଉ, କିନ୍ତୁ ପ୍ରତାପଙ୍କ ସମୁଦାୟ ଜୀବନ ଯେ ଏହି ଉକ୍ତିର ଜଳନ୍ତ ଉଦାହରଣର ସ୍ଥଳ ଏହା ଆମ୍ଭେମାନେ ଭୁଲିଯାଉଁ । ଏହି ଅଜେୟ ମନବଳ ପ୍ରଭାବରୁ ସେ ମିବାର ତୁଲ୍ୟ ସାମାନ୍ୟ ଭୂଖଣ୍ଡ ଜଣେ ସାମାନ୍ୟ ରାଜା ହୋଇ ସୁଦ୍ଧା ତଦାନୀନ୍ତନ ଭୂପୃଷ୍ଠସ୍ଥ ସମ୍ରାଟ ମଣ୍ଡଳୀ ମଧ୍ୟରେ ସର୍ବାଧିକ କ୍ଷମତାଶାଳୀ ମହାପ୍ରତାପୀ ମୋଗଲ ସମ୍ରାଟ ଆକବରଙ୍କ ସହିତ ପ୍ରତିଦ୍ୱନ୍ଦିତା କରି ପରିଶେଷରେ ଜୟଲାଭ କରିଥିଲେ । ଏହି ସମ୍ପର୍କରେ ସଦାଶୟ ଟଡ୍ ସାହେବଙ୍କ ଉକ୍ତି ଉଲ୍ଲେଖଯୋଗ୍ୟ· "Undaunted heroism, inflexible fortetude, that "which keeps honour bright" pers-everance—with fiditity such as no nation can boast. Where

GPNanda Colln., Digitized by srujanika@gmail.com

the materials opposed to a soaring ambition, commanding talence unlimited means and the fervour of religious zeal, all, however, in sufficient to content with one unconquerable might"

ଟିକେ ସୂକ୍ଷ୍ମ ଭବରେ ଦେଖିବାକୁ ଗଲେ ଧର୍ମବଳ ତାଙ୍କର ଏହି ଅଦ୍ଭୁତ ମନବଳର ନିଦାନ ବୋଲି ଅନୁମାନ ହୁଏ, ସ୍ୱଦେଶ ସେବା ଓ ସ୍ୱଜାତି ଗୌରବ ରକ୍ଷା ପ୍ରତାପଙ୍କ ଧର୍ମ ଥିଲା । ଏହି ଅକୃତ୍ରିମ ସ୍ୱଦେଶ ପ୍ରେମ ଓ ସ୍ୱଜାତି ପ୍ରେମ ତାଙ୍କର ସ୍ୱଭବତଃ ତେଜସ୍ୱୀ ମନକୁ ଅଦମ୍ୟ ଉତ୍ସାହ, ଧୈର୍ଯ୍ୟ ଓ ଅଧ୍ୟବସାୟରେ ନିର୍ମିତ ଦୁର୍ଭେଦ୍ୟ କବଚ ଦ୍ୱାରା ସୁରକ୍ଷିତ କରି ପଞ୍ଚବିଂଶ ବର୍ଷ ବ୍ୟାପୀ କଠୋର ସାଧନା ମଧ୍ୟରେ ସ୍ୱୀୟ କର୍ତ୍ତବ୍ୟ ପଥରେ ଅଚଳ ଓ ଅଟଳ ରଖିବାକୁ ସମର୍ଥ ହୋଇଥିଲା । "ଯତୋଧର୍ମସ୍ତତୋଜୟଃ" ଏହି ସନାତନ ନିୟମାନୁସାରେ ସେ ପରିଶେଷରେ ସାଧନାରେ ସିଦ୍ଧିଲାଭ କରିଥିଲେ । ପ୍ରକୃତ ପକ୍ଷେ ବୀର ପ୍ରସବିନୀ ଭରତ ଜନନୀଙ୍କର ସୁପ୍ରଶସ୍ତ କ୍ରୋଡ଼ରେ ବୀର ଚରିତ୍ରର ଅଭବ ନାହିଁ । ଅଭବର କାରଣ କେବଳ ଆମ୍ଭମାନଙ୍କ ଅଧୋଗତି ଜନିତ ଔଦାସୀନ୍ୟ । ପ୍ରତାପ ଯଦି ଜାପାନରେ ଜନ୍ମଗ୍ରହଣ କରିଥାନ୍ତେ, ତେବେ ତାଙ୍କ ନାମ ହୀରକ ଖଚିତ ଉନ୍ନତ ରାଜପ୍ରାସାଦଠାରୁ ଆରମ୍ଭ କରି ସାମାନ୍ୟ ପର୍ଣ୍ଣ କୁଟୀର ପର୍ଯ୍ୟନ୍ତ ଦେଶର ସର୍ବସ୍ଥାନରେ ପୂଜିତ ଓ ତାଙ୍କର ଅକ୍ଷୟ କୀର୍ତ୍ତିକଳାପ ଅମର ସଂଗୀତରେ ପ୍ରତିଧ୍ୱନିତ ହୋଇଥାନ୍ତା । କିନ୍ତୁ ହାୟ! ଆମ୍ଭମାନଙ୍କ ଦୁର୍ନିବାର ଆଳସ୍ୟ ଓ ଔଦାସିନ୍ୟ ଆମ୍ଭମାନଙ୍କର ସର୍ବବିଧ ମଙ୍ଗଳ ସାଧନ ପଥରେ ଘୋର ଅନ୍ତରାୟ ହୋଇଅଛି । ଐତିହାସିକ ବୀର ପୂଜାର ବହୁଳ ପ୍ରଚାର ବିଶେଷ ପ୍ରୟୋଜନ । ଶିବଜୀ, ଆକବର, ଏହି ଜାତୀୟ ବୀରପୁରୁଷ-ମାନଙ୍କ ପୂଜାର ସୂତ୍ରପାତ ହୋଇଅଛି । ଏହିପରି ଜାତୀୟ ବୀର ପୂଜା କ୍ରମଶଃ ବୃଦ୍ଧି ପାଇଲେ ତାହା ନବଭରତୀୟ ଜାତିର ପୁନରୁତ୍ଥାନର ଗୋଟିଏ ଉତ୍କୃଷ୍ଟ ପନ୍ଥା ହେବ, ଏଥିରେ ଦ୍ୱିରକ୍ତି ହୋଇ ନପାରେ । ଜାପାନ ଏହାର ଜ୍ୱଳନ୍ତ ଓ ଜୀବନ୍ତ ଉଦାହରଣ । ପୁଣି ସର୍ବ ଦେଶର ସବ ଯୁଗର ସାହିତ୍ୟ ଏହି ସତ୍ୟ ମୁକ୍ତ କଣ୍ଠରେ ପ୍ରଚାର କରୁଅଛି ।

"କ୍ଷଣମିହ ସଜ୍ଜନସଙ୍ଗତିରେକା
ଭବତି ଭବାର୍ଣ୍ଣବତରଣେ ନୌକା ।"

ପୁନଶ୍ଚ,

"Lives of great men all remind us
We can make our lives subline
And departing leave bahind us
Foot prints in the sand of time."

GPNanda Colln., Digitized by srujanika@gmail.com

# ରାଣା ସଂଗ୍ରାମ ସିଂହ

ଯେଉଁ ପ୍ରଖ୍ୟାତନାମା ସଂଗ୍ରାମ ସିଂହ ମୋଗଲ ବଂଶ ପ୍ରତିଷ୍ଠାତା ବାବରଙ୍କ ପ୍ରତିଦ୍ୱନ୍ଦୀ ଥିଲେ, ଏ ସେ ସଂଗ୍ରାମ ସିଂହ ନୁହନ୍ତି । ଏ ତାଙ୍କରି ବଂଶଧର, କିନ୍ତୁ ସର୍ବଶେଷ ମୋଗଲ ସମ୍ରାଟ ମହମ୍ମଦ ଶାହଙ୍କ ସମକାଳୀନ ଅଟନ୍ତି । ସେ ୧୬୧୬ ଖ୍ରୀ:ଅ ରୁ ୧୭୩୪ ଖ୍ରୀ:ଅ: ପର୍ଯ୍ୟନ୍ତ ୧୮ ବର୍ଷ ମିବାରରେ ରାଜତ୍ୱ କରିଥିଲେ । ଏହାଙ୍କ ସୁଶାସନରେ ମିବାରର ସମ୍ମାନ ବର୍ଦ୍ଧିତ ହୋଇଥିଲା ଓ ତହିଁର ସୀମା ପ୍ରସାରିତ ହୋଇଥିଲା । ଏହାଙ୍କ ମନ୍ତ୍ରୀଙ୍କ ନାମ ବିହାରୀଦାସ ପାଞ୍ଚୋଲୀ । ଏହାଙ୍କ ତୁଲ୍ୟ କାର୍ଯ୍ୟଦକ୍ଷ ଓ ବିଶ୍ୱାସୀ ମନ୍ତ୍ରୀ ମିବାରର ଇତିହାସରେ ବିରଳ । ଏହାଙ୍କୁ ମନ୍ତ୍ରୀତ୍ୱରେ ବରଣ କରିବାରେ ରାଣାଙ୍କର ମାନବ ପ୍ରକୃତି-ଜ୍ଞାନର ତୀକ୍ଷ୍ଣତା ସ୍ପଷ୍ଟ ରୂପେ ପ୍ରକାଶ ପାଇଥିଲା ।

ସେ ଜଣେ ଆଦର୍ଶ ମନୁଷ୍ୟ ଓ ଆଦର୍ଶ ରାଜା ଥିଲେ । ନିଜେ ରାଜ୍ୟରେ ଓ ରାଜ୍ୟାନ୍ତରରେ ସେ ଯଥୋଚିତ ରୂପରେ ସମ୍ମାନିତ ହେଉଥିଲେ । କି ବ୍ୟବସ୍ଥା ପ୍ରଣୟନାଦି ରାଜକାର୍ଯ୍ୟରେ କି ପାରିବାରିକ ବ୍ୟବହାରାଦିରେ ସେ କିପରି ଧର୍ମାନୁପ୍ରାଣିତ ଓ ନିର୍ଲିପ୍ତ ଭାବରେ ସର୍ବଦା କାର୍ଯ୍ୟ କରୁଥିଲେ, ତତ୍ ସମ୍ବନ୍ଧରେ ଅନେକ ଗୁଡିଏ ଗଳ୍ପ କଥିତ ଅଛି । ସେଥିରୁ ଦେଖାଯାଏ ଯେ ସଂଗ୍ରାମ ସିଂହ ଆପଣା ରାଜ୍ୟକୁ ଆପଣାର ସଂସାର ତୁଲ୍ୟ ମନେକରି ପ୍ରଜାମାନଙ୍କୁ ପାଳନ କରୁଥିଲେ, ନିଜେ ବିଜ୍ଞ, ନ୍ୟାୟବାନ ଓ ଅଟଳ ପ୍ରତିଜ୍ଞ ଅଧ୍ୟବସାୟୀ ଥିଲେ, ସରକାରୀ ଓ ବ୍ୟକ୍ତିଗତ ସମସ୍ତ ବ୍ୟୟ ନିଜେ ନିୟମିତ କରୁଥିଲେ, ଉତ୍ସବ ଓ ପରିଚ୍ଛଦ ପ୍ରଭୃତିରେ ଅମିତବ୍ୟୟ ନିବାରଣକାରୀ ଆଇନମାନ ଅତ୍ୟନ୍ତ ନିଷ୍ଠା ସହକାରେ ପାଳିତ ହେଉଥିଲା । ଏହି ଗଳ୍ପମାନଙ୍କ ମଧ୍ୟରୁ କେତେକ ନିମ୍ନରେ ପ୍ରଦତ୍ତ ହେଲା ।

ମିବାର ମଧ୍ୟରେ କୋଟାରିଓ ନାମରେ ଗୋଟିଏ କ୍ଷୁଦ୍ର ମାହାଲ ଅଛି । ତହିଁର ଦଳପତି ଚୌହାନ ବଂଶୀୟ ଓ ଉଚ୍ଚତମ ସମ୍ମାନର ଅଧିକାରୀ ଥିଲେ । ସେ ଏକଦା ରାଣାଙ୍କ ଦରବାର ପୋଷାକର କିଞ୍ଚିତ ଶ୍ରୀ ବୃଦ୍ଧି କରିବା ସକାଶେ ରାଣାଙ୍କୁ ଅନୁରୋଧ କଲେ । ରାଣା ଭଦ୍ରତାନୁରୋଧରେ ସେହି ଅନୁରୋଧ ତତ୍କ୍ଷଣାତ୍ ପ୍ରତ୍ୟାଖ୍ୟାନ କରି ନ ପାରି ତହିଁରେ ସମ୍ମତ ହେଲେ ଦଳପତି ମହୋଦୟ ରାଣାଙ୍କ ସମ୍ମତି ପାଇଅଛନ୍ତି ବୋଲି ଆପଣାକୁ ଅତ୍ୟନ୍ତ ଗୌରବାନ୍ୱିତ ମନେକରି ଆପଣା ମାହାଲକୁ ପ୍ରତ୍ୟାଗମନ କଲେ । କିନ୍ତୁ ଏଣେ ରାଣା ମନ୍ତ୍ରୀଙ୍କୁ ଡକାଇ ଆଦେଶ କଲେ କୋଟାରିଓ ମାହାଲର ଦୁଇଗୋଟି ମୌଜା ଖାସ କର । ଏହି ସମ୍ବାଦ ଅବିଳମ୍ବେ ଦଳପତିଙ୍କ କର୍ଣ୍ଣଗୋଚର ହୁଅନ୍ତେ ଉକ୍ତ ମହୋଦୟ ତତ୍କ୍ଷଣାତ୍ ରାଣାଙ୍କର ଦରବାରକୁ ଆସି ବିନୟ ସହକାରେ

GPNanda Colln., Digitized by srujanika@gmail.com

ଜିଜ୍ଞାସା କଲେ, କି ଦୋଷରୁ ରଣା ତାଙ୍କ ଉପରେ ଏପରି ଅସନ୍ତୁଷ୍ଟ ହୋଇ-ଅଛନ୍ତି । ରଣା ଉତ୍ତର କଲେ "ରାଓଜୀ- ଦୋଷ କିଛି ନାହିଁ, ଆପଣଙ୍କ ଅନୁରୋଧଟା ରକ୍ଷା କରିବାକୁ ହେବ, ତାହାହେଲେ କିଛି ଅନାବଶ୍ୟକ ପୋଷାକ ବ୍ୟବହାର କରିବାକୁ ହେବ । ମୁଁ ସୂକ୍ଷ୍ମ ରୂପେ ହିସାବ କରି ଦେଖିଲି ଯେ, ସେଥିଲାଗି ଯେଉଁ ବ୍ୟୟ ହେବ, ତାହା ଏହି ଦୁଇ ମୌଜାର ରାଜସ୍ୱରୁ ଠିକ୍ ରୂପେ ନିର୍ବାହିତ ହୋଇପାରିବ । ପୁଣି ମୋହର ନିଜ ଆୟର ପ୍ରତ୍ୟେକ କପର୍ଦ୍ଦକ ଯଥୋଚିତ କାର୍ଯ୍ୟରେ ନିୟୋଜିତ ହୋଇଅଛି, ଏଣୁ ଆପଣଙ୍କ ଅନୁରୋଧ ରକ୍ଷାଜନିତ ବ୍ୟୟ ଭାର ଆପଣଙ୍କ ଉପରେ ପକାଇବା ଭିନ୍ନ ଆମ୍ଭମାନଙ୍କ ପରମ୍ପରାଗତ ପରିଚ୍ଛଦର ଅଯଥା ପରିବର୍ତ୍ତନର ଅନ୍ୟ କୌଣସି ଉପାୟ ମୁଁ ପାଇଲି ନାହିଁ । ବୋଲିବା ବାହୁଲ୍ୟ ଯେ ଚୌହାନ ଦଳପତି ମହୋଦୟ ସେହି ଆଦେଶର ପ୍ରତ୍ୟାହାର ସକାଶେ ପ୍ରାର୍ଥନା କରେ ଓ ଭବିଷ୍ୟତରେ ଆଉ କେବେ ପରିଚ୍ଛଦାଦି ସଂକ୍ରାନ୍ତ ଆଇନର ଅଲ୍ଲଙ୍ଘନ ନକରିବା ପକ୍ଷରେ ଯତ୍ନବାନ୍ ରହିଲେ ।

ଆଉ ଏକ ସମୟରେ ରଣା ନିଜେ ବିସ୍ମରଣ ହେତୁରୁ ବା ଭ୍ରମବଶତଃ ସ୍ୱ ପ୍ରତିଷ୍ଠିତ ବ୍ୟବସ୍ଥା ଲଙ୍ଘନ ପୂର୍ବକ ରାଜପରିବାରର ଅଧୀନ ଗୋଟିଏ ଗ୍ରାମ ହସ୍ତାନ୍ତରିତ କରିଥିଲେ । ରଣାଙ୍କର ବନ୍ଦୋବସ୍ତ ଏପରି ଯେ, କି ରନ୍ଧନ ବିଭାଗ, କି ପରିଚ୍ଛଦ ବିଭାଗ, ଇତ୍ୟାଦି ପ୍ରତ୍ୟେକ ବିଭାଗ ସକାଶେ ସ୍ୱତନ୍ତ୍ର ସ୍ୱତନ୍ତ୍ର ଜମି ଖଞ୍ଜା ଥାଏ ଓ ପ୍ରତ୍ୟେକ ବିଭାଗର ତହବିଲ ସ୍ୱତନ୍ତ୍ର ରକ୍ଷିତ ହୁଏ । ଏହି ସବୁ ଜମିକୁ 'ଥୁଆ' କହନ୍ତି ଓ ଏଥିର କର୍ମଚାରୀଙ୍କୁ ଥୁଆଦାର' କହନ୍ତି । ଏହି ଥୁଆଦାରମାନେ ପ୍ରତ୍ୟେକେ ସ୍ୱ ସ୍ୱ ନ୍ୟାସ ନିମିତ୍ତ ପ୍ରଧାନ ସଚିବଙ୍କ ନିକଟରେ ଦାୟୀ । ରଣା ଏଥି ମଧ୍ୟରୁ ଖଣ୍ଡିଏ ଗ୍ରାମ ହସ୍ତାନ୍ତରିତ କରିଥିଲେ । ଦିନେ ଭୋଜନାଳୟରେ ଆପଣା ଦଳପତିମାନଙ୍କ ସହିତ ମଣୋହିରେ ବସି ରଣା ଦେଖିଲେ; ଦଧି ନିମିତ୍ତ କନ୍ଦ ଦିଆଯାଇ ନାହିଁ । ରାଜପୁତମାନଙ୍କ ଭୋଜନରେ ଏହା ପ୍ରଧାନ ସାମଗ୍ରୀ । ରଣା ଦହିର ଅଭାବ ଦେଖି ତତ୍ତ୍ୱାବଧାରଙ୍କୁ ତିରସ୍କାର କଲେ । ତତ୍ତ୍ୱାବଧାରକ ନିବେଦନ କଲେ, "ହେ ଅନ୍ନଦାତା, ମନ୍ତ୍ରୀ କହୁଅଛନ୍ତି, ଛାମୁ କନ୍ଦ ନିମିତ୍ତ ନିର୍ଦ୍ଦିଷ୍ଟ ଗ୍ରାମକୁ ହସ୍ତାନ୍ତରିତ କରିଅଛନ୍ତି ।" 'ଠିକ୍", ରଣା ଏତିକି ଉତ୍ତର କଲେ ଏବଂ ଏ ସମ୍ବନ୍ଧରେ ଆଉ କିଛି ନ କହି ଦହିରେ କନ୍ଦ ନ ଦେଇ ମୁଣୋହି କାର୍ଯ୍ୟ ସମାପନ କଲେ ।

ଯେଉଁ ଦେଶର ରାଜନ୍ୟମଣ୍ଡଳୀ ଓ ବୃତ୍ତୀଶ୍ୱରବର୍ଗ ସାମାନ୍ୟ ଉପକାର ପଦ ଲାଳସାରେ ଓ ଅନ୍ୟାନ୍ୟ ଅକିଞ୍ଚିତକର ଓ ସ୍ୱାର୍ଥପର ବ୍ୟାପାରରେ ଆପଣା ଆପଣା ସମ୍ପତ୍ତିରାଶି ଉଡାଇ ଦେବାକୁ ଅଣୁମାତ୍ର କୁଣ୍ଠାବୋଧ ନ କରନ୍ତି, ସେମାନଙ୍କର ସଂଗ୍ରାମ ସିଂହଙ୍କ ଉକ୍ତ ଉଦାହରଣରୁ କିଛି ଶିଖିବାର ନାହିଁ କି ?

ଆଉ ଗୋଟିଏ ଘଟନାରୁ ଦେଖାଯିବ, ତାଙ୍କ ଚରିତ୍ର ଅନମନୀୟ ଥିଲା ଏବଂ ରାଜକାର୍ଯ୍ୟରେ ଯେପ୍ରକାର ଅନଧିକାରଚର୍ଚ୍ଚା ପ୍ରାଚ୍ୟ ରାଜ୍ୟମାନଙ୍କର ଅଧଃପତନର ମୂଳ କାରଣ, ସେପରି ଅନଧିକାରଚର୍ଚ୍ଚା ବିରୁଦ୍ଧରେ ସେ ଖଡ୍ଗହସ୍ତ ଥିଲେ । ରଣାଙ୍କ ନାବାଳଗୀ ସମୟରେ ତାଙ୍କ ଜନନୀ ତାଙ୍କର ପ୍ରଧାନ ଅଭିଭାବିକା ଥିଲେ, ଏଣୁ ତାଙ୍କ ଉପରେ ଓ ରାଜ୍ୟ ମଧ୍ୟରେ ରାଜ-ମାତାଙ୍କର ବିଶେଷ ପ୍ରଭାବ ଥିଲା । କ୍ରମେ ସଂଗ୍ରାମ ସିଂହ ସାବାଳଗ ହେଲେ ଓ ସ୍ୱୟଂ ରାଜକାର୍ଯ୍ୟ ବୁଝିଲେ । ଏକଦା ଦରିଆବୁଦ (Deriabud) ନାମକ ସ୍ଥାନର ଦଳପତିଙ୍କ ସମ୍ପତ୍ତି ଜବତ୍ କରାଗଲା । କିନ୍ତୁ ସମସ୍ତେ ଜାଣନ୍ତି, ରଣା କେବେ

GPNanda Colln., Digitized by srujanika@gmail.com

କ୍ରୋଧବଶତଃ ଦଣ୍ଡ ଦିଅନ୍ତି ନାହିଁ କିମ୍ବା ଦୁର୍ବଲତାପ୍ରଯୁକ୍ତ କ୍ଷମା ଦିଅନ୍ତି ନାହିଁ । ଏଣୁ କେହି ଦଳପତିଙ୍କ ସପକ୍ଷରେ କିଛି କହିବାକୁ ସାହସୀ ହେଲେ ନାହିଁ । ଏହିପରି ଦୁଇବର୍ଷ କାଳ ଦଳପତି ରାଜଦରବାରରୁ ବଞ୍ଚିତ ରହିଲେ । ପରିଶେଷରେ ସେହି ଦଳପତି ରାଣାଙ୍କ ନିଷ୍ପତ୍ତି ଅନ୍ୟଥା କରିବା ପାଇଁ ପ୍ରାର୍ଥନା କରି ରାଜାବରୋଧର ପରିଚାରିକାମାନଙ୍କ ଦ୍ୱାରା ରାଜମାତାଙ୍କ ନିକଟରେ ଆବେଦନ କଲେ ଏବଂ ଏହି ଆବେଦନପତ୍ର ସଙ୍ଗରେ ଦୁଇଲକ୍ଷ ଟଙ୍କାର ନୋଟ୍ ଓ ପରିଚାରିକାମାନଙ୍କୁ ପ୍ରଚୁର ଅର୍ଥ ଦେଇଥିଲେ । ରାଣା ପ୍ରତ୍ୟହ ଆହାର ପୂର୍ବରୁ ମାତୃଦର୍ଶନ କରନ୍ତି । ଦିନେ ଏହି ସମୟରେ ରାଜମାତା ଉକ୍ତ ଦଳପତିଙ୍କ ଆବେଦନ ବିଷୟ ଉପସ୍ଥାପିତ କରି ତାଙ୍କ ସମ୍ପତ୍ତି ପୁନଃପ୍ରଦାନ କରିବା ନିମିତ୍ତ ଅନୁରୋଧ କଲେ । ରାଣା ଶୁଣି କିଛି କହିଲେ ନାହିଁ; କିନ୍ତୁ ତତ୍କ୍ଷଣାତ୍ କାର୍ଯ୍ୟରେ ପ୍ରବୃତ୍ତ ହେଲେ । ସାଧାରଣତଃ କୌଣସି ଭୂମିଦାନପତ୍ର ଚୂଡ଼ାନ୍ତ ରୂପେ ପ୍ରସ୍ତୁତ ହେବା ପୂର୍ବରୁ ଆଠଦିନ ଅତୀତ ହୋଇ ଥାଏ । କାରଣ, ତହିଁରେ ରାଣାଙ୍କର ଆଠଜଣ ମନ୍ତ୍ରୀଙ୍କ ପ୍ରତ୍ୟେକଙ୍କର ମୋହର ସଂଯୁକ୍ତ ହୁଏ । କିନ୍ତୁ ଉପସ୍ଥିତ ଘଟନାରେ ରାଣା ସେହି ଦାନପତ୍ର ଅବିଳମ୍ବେ ସମ୍ପାଦିତ ହେବାର ଓ ସେ ମାତୃଭବନରୁ ପ୍ରସ୍ଥାନ କରିବା ପୂର୍ବରୁ ତାହା ପାଇବାର ଆଦେଶ ଦେଲେ । ସେହି ଦାନପତ୍ର ଆନୀତ ହୁଅନ୍ତେ ରାଣା ତାହା ସମ୍ମାନ-ପୁରଃସର ମାତାଙ୍କ ହସ୍ତରେ ଅର୍ପଣ କରି ସେହି ନୋଟ୍ ଦଳପତିଙ୍କୁ ଫେରାଇ ଦେବା ସକାଶେ ମାତାଙ୍କୁ ପ୍ରାର୍ଥନା କଲେ । ମାତୃଭକ୍ତି ଅନୁରୋଧରେ ଏହି ସ୍ୱାର୍ଥତ୍ୟାଗ ସମାପନାନ୍ତେ ମାତାଙ୍କୁ ପ୍ରଣାମ କରି ପ୍ରସ୍ଥାନ କଲେ । ତତ୍ ପରଦିନ ସେ ମାତାଙ୍କୁ ଦର୍ଶନ କରିବାକୁ ଗଲେ ନାହିଁ—ନିରୂପିତ ସମୟର ଏକଘଣ୍ଟା ଆଗରୁ ଭୋଜନ କରିବାର ଆଦେଶ କଲେ । ଏହା ଦେଖି ସମସ୍ତେ ଚମତ୍କୃତ ହେଲେ ଓ ରାଜମାତା ସର୍ବାପେକ୍ଷା ଅଧିକ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ । ସେଦିନ ଅତୀତ ହେଲା—ଆଉ ଦିନେ ଗଲା, ତଥାପି ରାଣା ମାତାଙ୍କୁ ଦେଖିବାକୁ ଆସିଲେ ନାହିଁ । ପୁଣି ରାଜମାତା ଗୋପନରେ ଯେଉଁ ସମ୍ବାଦ ପଠାଇଲେ, ସେ ତହିଁରେ ରୀତ୍ୟାନୁଯାୟୀ ଉତ୍ତର ଦେଲେ । ଅର୍ଥାତ୍ ଉତ୍ତରରେ ସରଳତା ବା ସ୍ୱାଭାବିକତା ଦେଖାଗଲା ନାହିଁ । କାଳେ ପୁତ୍ର ସ୍ନେହରୁ ବଞ୍ଚିତ ହେବେ, ରାଜମାତା ଏହି ଭୟରେ କାତର ହୋଇ ରାଣାଙ୍କ ଈଦୃଶ ବ୍ୟବହାରର କାରଣ ଅନୁସନ୍ଧାନ କରିବାକୁ ଲାଗିଲେ । କିନ୍ତୁ ଉକ୍ତ ଦଳପତିଙ୍କ ବିଷୟ ଛଡ଼ା ଆଉ କିଛି କାରଣ ପାଇଲେ ନାହିଁ । ତତ୍ପରେ ରାଜମାତା ଏ ବିଷୟରେ ମନ୍ତ୍ରୀଙ୍କ ସହାୟତା ଲୋଡ଼ିଥିଲେ, କିନ୍ତୁ ମନ୍ତ୍ରୀପ୍ରବର ସମ୍ମାନ ସହକାରେ କହି ପଠାଇଲେ—ରାଣାଙ୍କ ଭିନ୍ନ ଅନ୍ୟ କାହାରି ସହିତ ରାଜ୍ୟ ସଂକ୍ରାନ୍ତ ବ୍ୟାପାର ଘେନି ଆଲୋଚନା କରିବାକୁ ସେ ନିଷିଦ୍ଧ ହୋଇଅଛନ୍ତି । ତତ୍ପରେ ସେ ଅନ୍ୟ ଉପାୟମାନ ଅବଲମ୍ବନ କଲେ, କିନ୍ତୁ ସେ ସବୁ ମଧ୍ୟ ବିଫଳ ହେବାରୁ ସେ କ୍ରୋଧ ଗମ୍ଭୀର ଭାବ ଧାରଣ ପୂର୍ବକ ବିନା କାରଣରେ ପୁର-ଚାରିକାମାନଙ୍କୁ ଦଣ୍ଡ ଦେବାକୁ ଲାଗିଲେ ଓ ଉପବାସରେ କାଳଯାପନ କଲେ । ସଂଗ୍ରାମ ତଥାପି ଅଚଳ, ଅଟଳ । ତତ୍ପରେ ରାଜମାତା ଗଙ୍ଗାସ୍ନାନ ଉପଲକ୍ଷରେ ତୀର୍ଥଯାତ୍ରା କରି ଯିବାର ପ୍ରସ୍ତାବ କଲେ । ମାତାର ଉପଯୁକ୍ତ ବନ୍ଦୋବସ୍ତ କରି ଦିଆଗଲା—ବାହାରିବା ସମୟ ନିକଟବର୍ତ୍ତୀ ହୋଇ ଆସିଲା, ରାଣା ତଥାପି ଆସିଲେ ନାହିଁ । ରାଜମାତା ଅନ୍ତଃପୁରର ବାଟେ ମଥୁରାକୁ ଯାତ୍ରା କଲେ, ସେଠାରେ ତାଙ୍କ ଜାମାତା ସଦ୍‌ଗୁଣାକର ରାଜା ଜୟସିଂହ ତାଙ୍କୁ ଦେଖିପାରି ସ୍ୱୀୟ ନୂତନ ରାଜଧାନୀ ଜୟପୁରକୁ ଘେନିଗଲେ ଓ ସମ୍ମାନ ପ୍ରଦର୍ଶନ କରିବା ପାଇଁ ରାଣୀଙ୍କ ଶିବିକାରେ

GPNanda Colln., Digitized by srujanika@gmail.com

ସ୍ୱୀୟ ସ୍କନ୍ଧ ଲଗାଇଥିଲେ । ତତ୍‌ପରେ ଜୟସିଂହ ତାଙ୍କ ସଙ୍ଗେ ମିବାରକୁ ଯିବାଲାଗି ଓ ତାଙ୍କ ଶ୍ୟାଳକ ସଂଗ୍ରାମ ସିଂହଙ୍କୁ ପ୍ରାର୍ଥନା କରିବା ଲାଗି ଅଙ୍ଗୀକୃତ ହେଲେ । ରାଜମାତା ବହୁ ତୀର୍ଥ ଭ୍ରମଣ କରି ଫେରିଲା ପରେ ଅନ୍ନରପତି ତାଙ୍କ ସମଭିବ୍ୟାହାରରେ ମିବାର ଅଭିମୁଖରେ ଯାତ୍ରା କଲେ । ରାଜପୁତମାନଙ୍କ ମଧ୍ୟରେ ଆତିଥ୍ୟ ନିୟମ ଅଲଂଘନୀୟ । ଅତିଥି ଯାହା ମାଗିବେ ତାହା କଦାପି ପ୍ରତ୍ୟାଖ୍ୟାନ କରାଯାଇ ପାରିବ ନାହିଁ । ଏଣୁ ଅନ୍ନରପତି ଯେଉଁ ଉଦ୍ଦେଶ୍ୟରେ ସ୍ୱ-ରାଜଧାନୀ ଛାଡ଼ି ତାଙ୍କର ଆତିଥ୍ୟ ଗ୍ରହଣ କରିବାକୁ ଆସିଥିଲେ, ତାହା ପ୍ରତ୍ୟାଖ୍ୟାନ କରିବା ରଣାଙ୍କ ପକ୍ଷରେ ସମ୍ଭବ ନଥିଲା । କିନ୍ତୁ ବାହାର ଲୋକଙ୍କ ଦ୍ୱାରା ଘରକଳି ମୀମାଂସା ହେବାର ସେ ଘୋର ବିରୋଧୀ ଥିଲେ । ଏଣୁ ସେ ଅନ୍ନରପତିଙ୍କୁ ପାଛୋଟି ଆଣିବା ବାହାନାରେ ଉଦୟପୁର ଛାଡ଼ି ଜୟପୁର ଅଗ୍ରସର ହେଲେ । ମାତାଙ୍କ ସହିତ ଆଗ ସାକ୍ଷାତ କରି ମନମାଳିନ୍ୟ ମେଣ୍ଟାଇ-ଦେବା ତାଙ୍କର ପ୍ରକୃତ ଉଦ୍ଦେଶ୍ୟ ଥିଲା । ଏଣୁ ସେ ଆଗ ମାତାଙ୍କ ତମ୍ବୁକୁ ଯାଇ ତାଙ୍କର ଆଶୀର୍ବାଦ ଭିକ୍ଷା କଲେ ଏବଂ ମାତାଙ୍କୁ ଆଣି ରାଜପ୍ରାସାଦରେ ଛାଡିଲା ଉତ୍ତାରେ ଜୟସିଂହଙ୍କୁ ପାଛୋଟି ଆଣିବାକୁ ଗଲେ । ଏ ପ୍ରସଙ୍ଗରେ ସେ ମାତାଙ୍କୁ ଏତିକି ମାତ୍ର କହିଥିଲେ :"ଘରକଳି ଘରେ ରହିବା ଉଚିତ ।" ଏ ଉକ୍ତିଟି ସାମାନ୍ୟ, କିନ୍ତୁ ଅତୀବ ସାରଗର୍ଭକ ।

ଆଉ ଗୋଟିଏ ଘଟନାରୁ ଦେଖାଯିବ, ସେ କିପରି ଆପଣା ପ୍ରଜାମାନଙ୍କୁ ଜାଗ୍ରତ ମେଷପାଳକ ତୁଲ୍ୟ ଆପଦରୁ ରକ୍ଷା କରୁଥିଲେ । ଏକଦା ରଣା ଆହାର କରିବାକୁ ବସିଅଛନ୍ତି, ଏମନ୍ତ ସମୟରେ ସମ୍ବାଦ ଆସିଲା, ମାଲବର ପଠାଣ-ମାନେ କେତେକ ଗ୍ରାମ ଲୁଣ୍ଠନ କରି ଅଧିବାସିମାନଙ୍କୁ ବନ୍ଦୀ କରି ନେଇ ଯାଇଅଛନ୍ତି । ରଣା ତତ୍‌କ୍ଷଣାତ୍ ଅନ୍ନପାତ୍ର ଠେଲିଦେଇ ନାଗରା ଦ୍ୱାରା ସ୍ୱକୀୟ ଦଳପତିମାନଙ୍କୁ ଡକାଇ ଦସ୍ୟୁ ଦମନ କରାଇଲେ ଓ ପୁତ୍ରତୁଲ୍ୟ ପ୍ରଜାମାନଙ୍କୁ ବିପଦରୁ ମୁକ୍ତ କରାଇଲେ । ଏହି ଘଟନା ପଢ଼ିଲା ବେଳେ ମହାବୀର ପାଣ୍ଡବ-ମାନଙ୍କ ପ୍ରଜାପାଳନ କଥା ମନେପଡେ ।

ରଣା କି କୌଶଳରେ ତୋଷାମଦ ଦମନ କରିଥିଲେ ଓ ତାଙ୍କର ଦଳପତିମାନେ ମଧ୍ୟ କିପରି ତାଙ୍କରି ତୁଲ୍ୟ କର୍ତ୍ତବ୍ୟନିଷ୍ଠ, ନିର୍ଲୋଭ ଓ ନିର୍ଲିପ୍ତ ଥିଲେ, ତାହା ଆଉ ଗୋଟିଏ ଘଟନାରୁ ଜଣାଯିବ । ଦୀର୍ଘତା ଭୟରେ ସେ ଘଟନାଟି ବର୍ଣ୍ଣନା କରିବାରୁ ବିରତ ହେଲି—କିନ୍ତୁ ତହିଁର ସାରକଥା ଏହି ଯେ, ରାଜା ଯେମରି ଚରିତ୍ରବିଶିଷ୍ଟ, ପ୍ରଜାମାନେ ସେହିପରି ହୁଅନ୍ତି । ରାଜା ଭଲ ହେଲେ ପ୍ରଜାମାନେ ଭଲ ହୁଅନ୍ତି, ରାଜା ମନ୍ଦ ହେଲେ ସେମାନେ ମଧ୍ୟ ମନ୍ଦ ହୁଅନ୍ତି ।

ଉକ୍ତ ଘଟନା ମାନଙ୍କରୁ ଦେଖାଯିବ ଯେ, ରଣା ସଂଗ୍ରାମ ଜଣେ ନୀରବ କର୍ମବୀର ଥିଲେ । ପୁଣି ତାଙ୍କ ଚରିତ୍ରରେ ଏପରି ଗୋଟିଏ ମାଧୁରୀ ଅଛି ଯେ, ତାଙ୍କ ବିଷୟ ଆଲୋଚନା କଲେ ମନ ମୋହିତ ହୋଇଯାଏ ଓ ପବିତ୍ର ଭକ୍ତି-ରସରେ ଆପ୍ଳୁତ ହୁଏ ।

GPNanda Colln., Digitized by srujanika@gmail.com

# ରାମ ଦାଶ

କେହି କେହି ଆକ୍ଷେପ କରି କହନ୍ତି:—"ଏହି ଦୁର୍ବଳ ଭାରତବାସୀ ତାହାର ପୂର୍ବପୁରୁଷମାନଙ୍କର ଗୌରବର କାହାଣୀ ଇତିହାସର ପୃଷ୍ଠାରେ ଲିପିବଦ୍ଧ କରି ରଖି ପାରିନାହିଁ । ସାମାନ୍ୟ ବ୍ୟବହାର୍ଯ୍ୟ ପଦାର୍ଥ ପାଇଁ ଯେପରି ବିଦେଶର ମୁହଁକୁ ଚାହିଁ ବସି ରହିଅଛି, ସେହିପରି ସ୍ୱଦେଶର ଅତୀତ ଗୌରବର କାହାଣୀ ପାଇଁ ସେହି ବୈଦେଶିକ ମହାପୁରୁଷମାନଙ୍କ ଉପରେ ନିର୍ଭର କରୁଅଛି । ସେମାନଙ୍କର ସେ ଅଧ୍ୟବସାୟ କାହିଁ, ସେ ଅନୁସନ୍ଧିତ୍ସା କାହିଁ, ସେ ଗବେଷଣାପ୍ରିୟତା କାହିଁ, ଯେ ସେମାନେ ଐକାନ୍ତିକ ଯତ୍ନସହକାରେ କଠୋର ସାଧନରେ ପ୍ରବୃତ୍ତ ହୋଇ ଅତୀତ ଗୌରବର ଚିତ୍ର ସେମାନଙ୍କର ପ୍ରତିବେଶୀମାନଙ୍କ ସମକ୍ଷରେ ଉତ୍ତୋଳନ କରିବାକୁ ସମର୍ଥ ହେବେ ।" କିନ୍ତୁ ଯାହା ଅନ୍ୟ କୌଣସି ଭାରତବାସୀ କରି ପାରିନାହିଁ, ତାହା ଜଣେ ଦୀନହୀନ ଓଡ଼ିଆ, ସୁନିପୁଣ ଓ ସୁସମ୍ବଦ୍ଧ ଭାବରେ ନ ହେଲେ ମଧ୍ୟ, ଯତ୍‌ସାମାନ୍ୟ ପ୍ରକାରେ ସମ୍ପନ୍ନ କରିଥିବାର ଜଣାଯାଏ । ଏହି ମହାତ୍ମା "ଦାର୍ଢ୍ୟତା-ଭକ୍ତି-ରସାମୃତ" ରଚୟିତା ରାମ ଦାଶ । ରାମ ଦାଶ ଗଞ୍ଜାମ ଜିଲ୍ଲାନ୍ତର୍ଗତ ମହୁରୀ ତାଲୁକାରେ ଜନ୍ମଗ୍ରହଣ କରିଥିଲେ । ଏହାଙ୍କ ବାସସ୍ଥାନ ବ୍ରହ୍ମପୁର ନିକଟବର୍ତ୍ତୀ ତୁରା । ସେ ଦାର୍ଢ୍ୟତା-ଭକ୍ତିରସାମୃତରେ କହିଅଛନ୍ତି:—

"ମହୁରୀ ରାଜ୍ୟ ତୁରା ଗ୍ରାମ
ସେ ଗ୍ରାମେ ଅଟେ ମୋ ବିଶ୍ରାମ ।"

ତୁରା ଖଣ୍ଡିଏ ପଲ୍ଲୀ ଗ୍ରାମ । ଏଠାରେ ଅନେକ ହଳୁଆ ବ୍ରାହ୍ମଣ ବାସ କରନ୍ତି—ଗୋଟିଏ ଦେବାଳୟ ମଧ୍ୟ ଅଛି । ରାମ ଦାଶ ଏହି ଦେବାଳୟର ଅଧିକାରୀ ଓ ଏହି ବ୍ରାହ୍ମଣମାନଙ୍କର 'ଗୋସାଇଁ' ଅର୍ଥାତ୍ ଦୀକ୍ଷାଗୁରୁ ଥିଲେ । ଏହି ଜିଲ୍ଲାର ଉତ୍ତର ପ୍ରଦେଶର ଅନେକଠାରେ ଦେଖାଯାଏ କି, ଯେଉଁ ଗ୍ରାମରେ ଏକ ଶ୍ରେଣୀର ବ୍ରାହ୍ମଣମାନେ ବେଶି ସଂଖ୍ୟାରେ ନିବାସ କରନ୍ତି, ସେହିଠାରେ ସେମାନେ ଗୋଟିଏ ଦେବାଳୟ ତୋଳାଇ ସେମାନଙ୍କ ଭିତରୁ ଜଣକୁ ବାଛି ତାହାକୁ ସେହି ମଠର ଅଧିକାରୀ କରି, ଗୋସ୍ୱାମୀ ଉପାଧି ଦେଇ ତାହାଠାରୁ ମନ୍ତ୍ର ଗ୍ରହଣ କରନ୍ତି । ଏହି ଗୋସ୍ୱାମୀମାନେ ବାନପ୍ରସ୍ଥାଶ୍ରମ ଅବଲମ୍ବନ କରନ୍ତି ନାହିଁ; ଗୃହସ୍ଥାଶ୍ରମରେ ଥାଇ ନିଜ ନିଜ କର୍ତ୍ତବ୍ୟ କର୍ମମାନ ଚଳାଇ ନିଅନ୍ତି । ରାମ ଦାଶ ଏହି ଶ୍ରେଣୀର ଜଣେ "ଗୋସାଇଁ" । ଏ ଜାତିରେ ହଳୁଆ ବ୍ରାହ୍ମଣ, ବଳରାମଗୋତ୍ରୀ ଓ ଯଜୁର୍ବେଦୀ । ଏହାଙ୍କ ପିତାଙ୍କ ନାମ ଲକ୍ଷ୍ମନ ଦାଶ—"ପିତା ମୋ ଲଛମନ ଦାଶ । ମୁହିଁ ଅଟଇ ତାଙ୍କ ଶିଷ୍ୟ ।" ପୁତ୍ରଙ୍କ ନାମ ମଧୁସୂଦନ ଦାଶ । ତାଙ୍କର ବଂଶତାଳିକା—

GPNanda Colln., Digitized by srujanika@gmail.com

କୃଷ୍ଣ ଦାଶ
।
ଲକ୍ଷ୍ମଣ ଦାଶ
।
ରାମ ଦାଶ
।
ମଧୁସୂଦନ ଦାଶ
।
ଆର୍ତ୍ତ ଦାଶ
।
ଶ୍ରୀଧର ଦାଶ
।
ପରଶୁରାମ ଦାଶ

ଦାର୍ଢ୍ୟତା-ଭକ୍ତିରସାମୃତ ପ୍ରଥମ ଖଣ୍ଡ ସପ୍ତମ ଅଧ୍ୟାୟରେ ଯେଉଁ ରାମ ଦାଶଙ୍କ ବିଷୟ ଲିପିବଦ୍ଧ ହୋଇଅଛି, ସେ ସମ୍ଭବତଃ କବି ରାମ ଦାଶ ବିନା ଅନ୍ୟ କେହି ନୁହଁନ୍ତି । ଅଳ୍ପ ପରିଶୀଳନ କରି ଦେଖନ୍ତୁ । ଦାର୍ଢ୍ୟତା ରାମ ଦାଶଙ୍କ ବସତି ଦକ୍ଷିଣ ଦେଶ—"ଦକ୍ଷିଣ ଦେଶେ ପୁଣ୍ୟ କ୍ଷେତ୍ର । ଦେଖିଲା ମାତ୍ରକେ ପବିତ୍ର ।" କବି ରାମ ଦାଶଙ୍କ ବାସସ୍ଥାନ ଗଞ୍ଜାମ ମଧ୍ୟ ଦକ୍ଷିଣ ଦେଶରେ । ଦାର୍ଢ୍ୟତା ରାମ ଦାଶ ଜଣେ 'ଗୃହୀ ବୈଷ୍ଣବ' ଓ କୌଣସି ମଠର ଅଧିକାରୀ ଥିଲେ, ତାହାଙ୍କର କୁଟୁମ୍ବ ତିନିଜଣ—"ଗୃହୀ ବୈଷ୍ଣବ ଅଟେ ପୁଣ । ତାର କୁଟୁମ୍ବ ତିନିଜଣ । ଏକଇ ପୁତ୍ର, ଏକ ନାରୀ । ସେ ଗ୍ରାମେ ଥାନ୍ତି ମଠ କରି ।" କବି ରାମ ଦାଶ ମଧ୍ୟ ଜଣେ ଗୃହୀ ବୈଷ୍ଣବ ଓ ତୁରୁ ମଠର ଅଧିକାରୀ ଥିଲେ । ଏହାଙ୍କ କୁଟୁମ୍ବରେ ମଧ୍ୟ ତିନିଜଣରୁ ଅଧିକ ନଥିଲେ । ଦାର୍ଢ୍ୟତା ରାମ ଦାଶଙ୍କ "ସର୍ବଦା କାଳେ ତା ଭଜନ । କେବଳ ପ୍ରଭୁ ଲକ୍ଷ୍ମଣ ।" ରାମମତାବଲମ୍ବୀ କବି ରାମ ଦାଶଙ୍କ ଇଷ୍ଟଦେବତା ମଧ୍ୟ ଲକ୍ଷ୍ମଣ । ଦାର୍ଢ୍ୟତା ରାମ ଦାଶଙ୍କ ପରି କବି ରାମ ଦାଶ ନିରନ୍ତର ସାଧୁ ବୈଷ୍ଣବ ସେବାରେ ଅନୁରକ୍ତ ଥାନ୍ତି । ଦାର୍ଢ୍ୟତା ରାମ ଦାଶ 'ପଣ୍ଡିତ, ବିବେକ' ଥିଲେ, କବି ରାମ ଦାଶ ମଧ୍ୟ ଜଣେ ସାଧାରଣ ପଣ୍ଡିତ ବୋଲି ପରିଚିତ ।

ରାମ ଦାଶଙ୍କ ବିଦ୍ୟାଗୁରୁ କୌଣସି ଗଦାଧର ଦାଶ "ଶ୍ରୀଯୁକ୍ତ ଗଦାଧର ଦାଶ । ସେ ପାଦପଦ୍ମେ ମୋର ଆଶ ।" ଲୋକେ କହନ୍ତି, ଏହି ଗଦାଧରଙ୍କ-ଠାରେ ରାମ ଦାଶ ସଂସ୍କୃତ ଅଧ୍ୟୟନ କରିଥିଲେ । ଯଥୋଚିତ ପାରଦର୍ଶିତା ଲାଭ କରି ଏ ନିଜେ ଖଣ୍ଡିଏ ସଂସ୍କୃତ ପାଠଶାଳା ଫିଟାଇ ତୁରୁର କେତେକ ଶିଷ୍ୟଙ୍କୁ ସଂସ୍କୃତ ପଢ଼ାଉଥିଲେ । ରାମ ଦାଶ ତୁରୁର କାର୍ଯ୍ୟ କାମ ମଧ୍ୟ କରୁଥିଲେ । ଏହି କାର୍ଯ୍ୟପଣିଆ ଏହାଙ୍କ ପୁରୁଷାନୁକ୍ରମେ ଚାଲି ଆସୁଥିଲା ପରି ଜଣାଯାଏ । ଏହାଙ୍କ ପିତା କାର୍ଯ୍ୟୀ ଥିଲେ, ଏ ନିଜେ କାର୍ଯ୍ୟୀ ଥିଲେ ଓ ଏହାଙ୍କ ବଂଶଧର ପରଶୁରାମ ଦାଶ ମଧ୍ୟ ବର୍ତ୍ତମାନ କାର୍ଯ୍ୟୀ ହୋଇଅଛନ୍ତି ।

ଦାର୍ଢ୍ୟତା-ଭକ୍ତିରସାମୃତ ଖଣ୍ଡିଏ ପ୍ରାଚୀନ ଭକ୍ତିଗ୍ରନ୍ଥ । ଏଥିରେ କେତେକ ପୌରାଣିକ ଓ ଅନେକ ଈଶ୍ୱରାନୁଗୃହୀତ ଐତିହାସିକ ଭକ୍ତଙ୍କ ଜୀବନ ବୃତ୍ତାନ୍ତ ଲିପିବଦ୍ଧ ହୋଇଅଛି । ଏହା ଦୁଇ ଭାଗରେ ବିଭକ୍ତ ଓ ପ୍ରତ୍ୟେକ ଭାଗ ୨୫ ଅଧ୍ୟାୟରେ ସମ୍ପୂର୍ଣ୍ଣ । ପ୍ରଥମ ଭାଗ ଶ୍ରୀ ବୀରକେଶରୀ ଦେବଙ୍କ ୪୨ ଅଙ୍କରେ ସମାପ୍ତ ହେବାର କବି ଲେଖିଅଛନ୍ତି—

GPNanda Colln., Digitized by srujanika@gmail.com

ଶ୍ରୀ ବୀରକେଶରୀ ଦେବଙ୍କ ।
ସମ୍ପୂର୍ଣ୍ଣ ବୟାଳିଶି ଅଙ୍କ ।
ଯେ ତୁଳ ପଞ୍ଚମୀ ଦିବସେ ।
ଶୁଦ୍ଧ ସକଳ ହରିବାସେ ।
ଚିତ୍ରା ନକ୍ଷତ୍ର, ରବିବାରେ ।
ତଉ୍ଲ୍ୟ ନାମକବଣରେ ।
ଶୁଭ କାମରେ ଯେଉଁ ଯୋଗ ।
ପଞ୍ଚାଶ ଦଣ୍ଡ ଥିଲା ଭୋଗ ।
ଏମନ୍ତ ଶୁଭ ଅନୁକୂଳେ ।
ପ୍ରାଣିଙ୍କର ଶ୍ରବଣ ମଙ୍ଗଳେ ।
ସମ୍ପୂର୍ଣ୍ଣ ହେଲା ଏ ଚରିତ ।
କହଇ ଲକ୍ଷ୍ମଣ ସୁତ ।

ଦ୍ୱିତୀୟ ଖଣ୍ଡ ଶ୍ରୀ ଦିବ୍ୟସିଂହଙ୍କ ୨୩ ଅଙ୍କରେ ସମାପ୍ତ ହୋଇଥିଲା:—

ଶ୍ରୀ ଦିବ୍ୟସିଂହ ଦେବଙ୍କର ।
ସମ୍ପୂର୍ଣ୍ଣ ତେଇଶି ଅଙ୍କର ।

ଦ୍ୱିତୀୟ ଖଣ୍ଡରେ କୌଣସି କୌଣସି ହସ୍ତଲିଖିତ ପୁସ୍ତକରେ ୨୭ ଓ କୌଣସି କୌଣସି ପୁସ୍ତକରେ ୨୮ ଅଧ୍ୟାୟ ଥିବାର ଲକ୍ଷିତ ହୁଏ ; କିନ୍ତୁ କବି ନିଜେ କହିଅଛନ୍ତି—

ପ୍ରଥମ ପ୍ରବନ୍ଧ ପଚିଶ ।
ଅଧ୍ୟାରେ ହୋଇଲା ପ୍ରକାଶ ।
ତହୁଁ ବତିଶ ସମ୍ବତ୍ସର ।
ଉତ୍ତାରୁ ସାଧୁମାନଙ୍କର ।
କୃପାରୁ ପୁଣ ପଞ୍ଚବିଂଶ ।
ଅଧ୍ୟା ଦାର୍ଢ୍ୟତାମୃତରସ ।
ଦୁଇ ପ୍ରବନ୍ଧ ମିଶିବାରେ ।
ସମ୍ପୂର୍ଣ୍ଣ ପଞ୍ଚାଶ ଅଧ୍ୟାରେ ।

କବି ପ୍ରଥମ ଭାଗ ରଚନା କଲାର ୩୨ ବର୍ଷ ଉତ୍ତାରୁ ଦ୍ୱିତୀୟ ଭାଗ ରଚନା କରିଥିଲେ ବୋଲି ଲେଖିଅଛନ୍ତି, ମାତ୍ର ଏହା ସମ୍ଭବପର ନୁହେଁ । ବୀରକେଶରୀ ଦେବ ଖ୍ରୀ: ୧୭୩୬ ଠାରୁ ଖ୍ରୀ: ୧୭୭୩ ପର୍ଯ୍ୟନ୍ତ ଓ ଦିବ୍ୟସିଂହ ଦେବ ଖ୍ରୀ: ୧୭୭୩ ଠାରୁ ଖ୍ରୀ: ୧୭୯୧ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ବୀରକେଶରୀ ଦେବଙ୍କ ବୟାଳିଶି ଅଙ୍କଠାରୁ ଦିବ୍ୟସିଂହଦେବଙ୍କ ୨୩ ଅଙ୍କ ସରିକି ୨୨ ବା ୨୩ ବର୍ଷ ହେବ, ୩୨ ବର୍ଷ କିପରି ହେଲା, ଜଣା ଯାଉନାହିଁ । ବୋଧହୁଏ 'ବାଇଶ' ପରିବର୍ତ୍ତେ 'ବତିଶ' ପଡି ଯାଇଥିବ । ସମ ଦାଶ ଓଡିଶା ରାଜା ବୀରକେଶରୀ ଦେବଙ୍କ ସମୟର କବି ଏହା ଉପରୋକ୍ତ ଅଂଶରୁ ସ୍ପଷ୍ଟ ଅବଧାରିତ ହୁଏ । ଏ କେଉଁ ସମ୍ବତ୍ସରରେ ଜନ୍ମଗ୍ରହଣ କରିଥିଲେ, ଜଣାଯାଏ ନାହିଁ ।

ଏଙ୍କ କବିତାରେ କୌଣସି ବାଗାଡ଼ମ୍ବର ବା ରଚନାଟୋପ ଲକ୍ଷିତ ହୁଏ ନାହିଁ—ଯାହା ଲେଖିଅଛନ୍ତି, ତାହା ଅତ୍ୟନ୍ତ ସରଳ ଓ ସୁଖବୋଧ ଭାଷାରେ ଲେଖିଅଛନ୍ତି । ଉଦାହରଣ ଦେଖନ୍ତୁ—

GPNanda Colln., Digitized by srujanika@gmail.com

ଏକଥା ଅଟଇ ପ୍ରମାଣ ।
ଶୁଣି ଚଳିଲେ ନୃପଗଣ ।
ବୋଇଲେ ଧର ହେ ଏହାକୁ ।
କେବଣ ବାପ ଆସି ରଖୁ ।
ସଭର ଲୋକେ ଆଚମ୍ବିତେ ।
ଅନାଇଛନ୍ତି ସ୍ତମ୍ଭୀଭୂତେ ।
ନିର୍ବନ୍ଧ କରି ବନ୍ଧାଇଲେ ।
ପାଦେ ଶାଙ୍କୋଳି ପିନ୍ଧାଇଲେ ।
ଶ୍ରୀ ପୁରୁଷୋତ୍ତମ ମଧ୍ୟରେ ।
ରଖାଇ ଗଲେ ବନ୍ଦୀଘରେ ।
ବନ୍ଦୀ ମନ୍ଦିରେ ଯତ୍ନ କରି ।
ଖଣା ଖୋଳାଇ ହାତ ଚାରି ।
ତହିଁରେ ଦାଶଙ୍କୁ ରଖାଇ ।
ଉପରେ କାଠ ପଟା ଦେଇ ।
ସେ କାଠ ପଟା ପରେ ଭଲେ ।
ପଥରମାନ ମଡ଼ାଇଲେ ।
ନିବନ୍ଧେ କବାଟ କିଳାଇ ।
ଯେମନ୍ତେ ନ ଯିବ ପଳାଇ ।
ଅନେକ ଲୋକଙ୍କୁ ହକାରି ।
ଜଣାଇ ଦେଲେ ଦଣ୍ଡଧାରୀ ।
ଜାଗ୍ରତେ ରଖି ଜଗୁଆଳ ।
କହି ଚଳିଲେ ମହୀପାଳ ।
ଛାମୁରେ ଥିଲେ ଯେତେ ନର ।
କହିବା ଶକ୍ତି ଅଛି କାର ।
ମହାପ୍ରତାପୀ ନୃପବର ।
ଚଳିଣ ଗଲେ ନିଜ ପୁର ।
ଲୋକେ ଯେ ଗଲେ ଯେଝା ପୁର ।
ଦାଶେ ରହିଲେ ବନ୍ଦୀଘର ।
ଜଗିଅଛନ୍ତି ଶତେ ଜଣ ।
ଅତ୍ୟନ୍ତ ଆକଟ କରିଣ ।
ନିବନ୍ଧ କରିଣ କବାଟ ।
ମାଛି ଗଳିତ ନାହିଁ ବାଟ ।
ଦାଶେ ରହିଲେ ତହି ଯାଇଁ ।
ନିବନ୍ଧେ ଅଛି ବନ୍ଧା ହୋଇ ।
ପଦରେ ଲାଗିଛି ଶାଙ୍କୋଳି ।
କେଣିକି ନ ପାରଇ ଚଳି ।
ଖଣା ମଧ୍ୟରେ ଅଛି ପଡ଼ି ।
ଆତଙ୍କେ ଶିରେ କର ଯୋଡ଼ି ।

X X X

'ରାମରସାମୃତ' ରାମ ଦାଶଙ୍କର ଅନ୍ୟତର ଗ୍ରନ୍ଥ ।

GPNanda Colln., Digitized by srujanika@gmail.com

# କବି ହରିକୃଷ୍ଣ

## ( ଏକାଦଶୀ ମାହାତ୍ମ୍ୟ—ଅନୁବାଦକ )

ପାରଳାର ଓଡ଼ିଆ କବିମାନଙ୍କ ମଧ୍ୟରେ ଏକାଦଶୀ ମାହାତ୍ମ୍ୟ— ଅନୁବାଦକ ହରିକୃଷ୍ଣ ସର୍ବ ପ୍ରାଚୀନ କବି । ଏ ଜାତିରେ ଚିତ୍ରକର । ହରିକୃଷ୍ଣଙ୍କର ବଂଶତାଳିକା ଏହି :—




ଏହାଙ୍କ ପିତାଙ୍କ ନାମ ଫକୀର ମହାରଣା ଓ ମାତାଙ୍କ ନାମ ଲୀଳାବତୀ । ହରିକୃଷ୍ଣ ପାରଳା ରାଜଭବନରେ ପ୍ରଧାନ ଚିତ୍ରକର ଥିଲେ । ପାରଳାର ଶ୍ରୀ ଜଗନ୍ନାଥ ଓ ଲିଡରୀ ଶ୍ରୀ ଗୋପୀନାଥଙ୍କୁ ଚିତ୍ର କରିବା ଏହାଙ୍କର ପ୍ରଧାନ କାର୍ଯ୍ୟ ଥିଲା । ଉତ୍ସବାଦି ସମୟରେ ରାଜବାଟୀର ସମସ୍ତ ଚିତ୍ରକାର୍ଯ୍ୟ ମଧ୍ୟ ଏ କରୁଥିଲେ । ଏଥିଲାଗି ପାରଳାର ତତ୍କାଳୀନ ରାଜା ଏହାଙ୍କୁ ମହାପାତ୍ର ଉପାଧି ଓ ଲକ୍ଷ୍ମୀପୁର ନାମକ ଖଣ୍ଡିଏ ଗ୍ରାମ ପ୍ରଦାନ କରିଥିଲେ । ଲିଡରୀ ପାରଳାଖେମୁଣ୍ଡିଠାରୁ ଦଶ କୋଶ ଦୂରରେ ସ୍ଥିତ ଗୋଟିଏ ପଲ୍ଲୀଗ୍ରାମ । ଲିଡରୀ ଗୋପୀନାଥ ପାରଳାଖେମୁଣ୍ଡି ତାଲୁକର ଏକ ପ୍ରଧାନ ଦେବତା । ଏହିଠାରେ ପ୍ରତିବର୍ଷ ଦୋଳୋତ୍ସବ ହୁଏ । ସମୟ ସମୟରେ ପାରଳାର ରାଜା ପରିବାରଙ୍କ ସହିତ ଗୋପୀନାଥଙ୍କ ଦର୍ଶନାର୍ଥେ ଏଠାକୁ ବିଜେ କରନ୍ତି । ଏହି

GPNanda Colln., Digitized by srujanika@gmail.com

ଗୋପୀନାଥ ମୂର୍ତ୍ତିଙ୍କୁ ହରିକୃଷ୍ଣ ସ୍ୱହସ୍ତରେ ଗଠନ କରିଥିବାର ଲୋକେ କହନ୍ତି । ହରିକୃଷ୍ଣ ଅବସ୍ଥାପନ୍ନ ନଥିଲେ, ତଥାପି ଅର୍ଥ ସଂଗ୍ରହାଭିଳାଷ ତାଙ୍କୁ ସ୍ପର୍ଶ କରି ପାରିନଥିଲା । କୁଟୁମ୍ବ ପରିପୋଷଣାର୍ଥେ ଯେତିକି ଆବଶ୍ୟକ, ସେତିକିରେ ସେ ସନ୍ତୁଷ୍ଟ ହେଉଥିଲେ । ଗୋପୀନାଥଙ୍କ ଗଠନ ଉପଲକ୍ଷରେ ହରିକୃଷ୍ଣ ଖଣ୍ଡିଏ ଗ୍ରାମ ପୁରସ୍କାର ସ୍ୱରୂପ ପ୍ରାପ୍ତ ହୋଇଥିଲେ । ଯେତେବେଳେ ଶ୍ରୀ ଗୋପୀନାଥ ଓ ଜଗନ୍ନାଥଙ୍କୁ ଚିତ୍ର କରିବା ସକାଶେ ଆଉ ଖଣ୍ଡିଏ ଗ୍ରାମ ପାଇଲେ, ତେତେବେଳେ ପ୍ରଥମୋକ୍ତ ଗ୍ରାମ ଖଣ୍ଡିକ ଫେରାଇ ଦେଇଥିଲେ । ଏହା କେତେଦୂର ସତ୍ୟ, ଆମେ କହି ନପାରୁଁ ; କିନ୍ତୁ ହରିକୃଷ୍ଣଙ୍କ ବଂଶଧରମାନେ ଏହି କଥା କହନ୍ତି । ହରିକୃଷ୍ଣ ବୈଷ୍ଣବ ଧର୍ମାବଲମ୍ବୀ ଥିଲେ । ନିଜ ମନବୃତ୍ତି ପ୍ରତି ଲକ୍ଷ୍ୟ ରଖି ସୁଦ୍ଧା ପରମାର୍ଥିକ ଚିନ୍ତାରେ ଅନେକ କାଳ ଅତିବାହିତ କରୁଥିଲେ । ଏହାଙ୍କ ପ୍ରଗାଢ଼ ଦେବଭକ୍ତି ବିଷୟରେ ଗୋଟିଏ କିଂବଦନ୍ତୀ ପ୍ରଚଳିତ ଅଛି । ଲିଭରୀ ଗୋପୀନାଥମୂର୍ତ୍ତି ଗଠନ କରୁ କରୁ ଏହାଙ୍କ ଗୋଡ଼ରେ କ୍ଷସ୍ତ ବାଜି ଗୋଡ ଫୁଟିଗଲା । ନାନା ପ୍ରକାର ଔଷଧ ଲେପନ କଲେ ମଧ୍ୟ କୌଣସି ପ୍ରକାର ଉପଶମ ଲାଭକରି ପାରିଲେ ନାହିଁ । ଦିନେ ମନସ୍ତାପରେ ଶଯ୍ୟାରେ ଶୋଇଥିଲେ, ସ୍ୱପ୍ନରେ କେହି ଜଣେ ଦେଖାଦେଇ କହିଲେ—"ଭକ୍ତିରସ ପ୍ରଧାନ କୌଣସି କବିତା ଯଦି ରଚନା କରିବୁ, ତେବେ ତୋ ଗୋଡ଼ ଭଲ ହୋଇଯିବ ।" ଏହି ସ୍ୱପ୍ନାଦେଶ ପାଇ ହରିକୃଷ୍ଣ ପ୍ରାତଃକାଳରୁ ଛୁଟି ଓଡ଼ିଆ ବର୍ଣ୍ଣମାଳାର ନିୟମାନୁସାରେ କ ଠାରୁ କ୍ଷ ପର୍ଯ୍ୟନ୍ତ ଚଉତିରିଶଟି ଜଣାଣ ରଚନା କରିବାକୁ କୃତସଂକଳ୍ପ ହେଲେ । ଯେଉଁ ଦିନ ରଚନା ଶେଷ ହେଲା, ସେହିଦିନ ହରିକୃଷ୍ଣ ଆରୋଗ୍ୟସ୍ନାନ କଲେ । ହରିକୃଷ୍ଣ ସଂସ୍କୃତ ପଢ଼ିଥିଲେ । ଏହା ତାହାଙ୍କ ଏକାଦଶୀ ମାହାତ୍ମ୍ୟ ଓ ଅନ୍ୟାନ୍ୟ କବିତାରୁ ଜଣାଯାଏ । ସଂସ୍କୃତ ଏକାଦଶୀମାହାତ୍ମ୍ୟ ସହିତ ଏହାଙ୍କ ଅନୁବାଦ ତୁଳନା କରି ଦେଖନ୍ତୁ :—

( ଶ୍ଳୋକ )

କଥୟିଷ୍ୟାମି ରାଜେନ୍ଦ୍ର ଭବତଃ ସ୍ନେହକାରଣାତ୍
ନ ତଥାତୁଷ୍ଟିମେ ରାଜନ୍ କ୍ରତୁଭିଷ୍ପ୍ରଦକ୍ଷିଣୈଃ ।।
ଯଥାମାତୁଷ୍ଟତାୟାତୀ ଏକାଦଶ୍ୟା ବ୍ରତେନବୈ ।
ତସ୍ମାତ୍ସର୍ବପ୍ରଯତ୍ନେନ କର୍ତ୍ତବ୍ୟୋ ହରିବାସରଃ ।।

ଗୀତ

କହନ୍ତି କମଳାର ବର ।
ଶୁଣହେ ନୃପତିଶେଖର ।।
ଯାହା ପୁଚ୍ଛିଲ ଶ୍ରଦ୍ଧା ଚିତ୍ତେ ।
ମୋ ବହୁ ସ୍ନେହ ଏହୁ ବ୍ରତେ ।।
ଏ ମହା ଏକାଦଶୀ ପୁଣ୍ୟେ ।
ଯେମନ୍ତ ସନ୍ତୋଷ ଯୋ ମନେ ।।
ଏ ବ୍ରତ ବିନା ଯେତେ କର୍ମ ।
ଅନେକ ଯଜ୍ଞ ତପ ଧର୍ମ ।।
ଏଥେ ସନ୍ତୋଷ ମୋର ନାହିଁ ।
ଶ୍ରୀ ଏକାଦଶୀ ପ୍ରାୟ ହୋଇ ।।
ଏ ମୋର ପ୍ରିୟା ଏକାଦଶୀ ।
ସକଳ ସୁଖ ପୁଣ୍ୟରାଶି ।।

GPNanda Colln., Digitized by srujanika@gmail.com

ଯତ୍ନେ ଯେ କରଇ ଏ ବ୍ରତ ।
ସେ ପ୍ରାଣୀ ମୋର ଆତ୍ମାହିତ ॥

ଶ୍ଳୋକ

ତଥାପ୍ୟେକାପିବୈକସ୍ୟା ଶୃଣୁଷ୍ୱରାଜନ୍ କଥାନକଂ
ଅତଃପରଂ ପ୍ରବକ୍ଷ୍ୟାମି ପୌଷସ୍ୟ କୃଷ୍ଣପାକ୍ଷିକାଂ ।
ଲୋକାନାଂଚ ହିତାର୍ଥାୟ କଥୟାମି ବିଧିଂ ତଥା ।
ପୌଷସ୍ୟ କୃଷ୍ଣପକ୍ଷେବୈ ସଫଳାନାମନାମତଃ ॥

ଗୀତ

ତଥାପି ଶୁଣ ମହୀପତି ।
ଏକାଗ୍ର ଭାବେ ଦେଇ ମତି ॥
ଏକେକ ବ୍ରତର ଲକ୍ଷଣ ।
କହିବା କରି ପୁଣ ପୁଣ ।
ଯେ ପୁଷ୍ୟକୃଷ୍ଣ ଏକାଦଶୀ ।
ଅର୍ଥଦାୟିନୀ ପୁଣ୍ୟରାଶି ॥
ସଫଳା ନାମଟି ଏହାର ।
ଏ ଅନ୍ତେ ଶୁଣ ନୃପବର ॥
ଏହାର ବିଧିମତ ଯେତେ ।
କହିବା ଲୋକଙ୍କର ହିତେ ।

ଶ୍ଳୋକ

ନାଗାନାଂ ଚ ଯଥା ଶେଷଃପକ୍ଷିଣା ଗରୁଡୋ ଯଥା
ଦେବନାଂ ଚ ଯଥା କୃଷ୍ଣୋ ଦ୍ୱିପଦାଂ ବ୍ରାହ୍ମଣେ ଯଥ
ବ୍ରତାନାଂ ଚ ତଥାରାଜନ୍ ଏକାଦଶୀବିଶିଷ୍ୟତେ ॥

ଗୀତ

ନାଗଙ୍କ ମଧ୍ୟେ ଶେଷ ବଡ଼ ।
ପକ୍ଷିଙ୍କ ଶ୍ରେଷ୍ଠଟି ଗରୁଡ଼ ।
ଦେବଙ୍କ ଶ୍ରେଷ୍ଠ କୃଷ୍ଣ ଯେହ୍ନେ ।
ମାନବେ ଶ୍ରେଷ୍ଠ ଯେ ବ୍ରାହ୍ମଣେ ॥
ତେମନ୍ତ ବ୍ରତଙ୍କ ବିଶିଷ୍ଟ ।
ଶ୍ରୀ ଏକାଦଶୀ ବ୍ରତ ଶ୍ରେଷ୍ଠ ॥

ଶ୍ଳୋକ

ନାରିକେଳ ଫଳୈଶ୍ଚୈବ ତଥୈବ ବୀଜପୂରକୈଃ
ଜମ୍ବୀରୈ ର୍ଦାଡ଼ିମୈଶ୍ଚୈବ ତଥା ପୂଗଫଳୈସ୍ତଥା ।
ଲବଙ୍ଗୈ ର୍ବିବିଧୈଶ୍ଚୈବ ତଥା ମ୍ରୈର୍ବିବିଧୈଫଳୈଃ
ପୂଜୟେଦ୍ଦେବଦେବେଶଂ ଧୂପଦୀପୈଃ ତଥୈବଚ ॥

GPNanda Colln., Digitized by srujanika@gmail.com

ଗୀତ

ଲବଙ୍ଗ ଆଦି ବାସ ଦ୍ରବ୍ୟ ।
ଯତନେ ଏହା ସମ୍ପାଦିବ ॥
ଜମ୍ବୀର ନାରିକେଳ ଆମ୍ର ।
ଗୁଆ କଦଳୀ ତାଳ ଡାମ୍ବ ।
ଟଭା ନାରଙ୍ଗ ଯେ ଡାଳିମ୍ବ ।
ଏ ଆଦି ଯେତେକ ମିଳିବ ॥
ମୋତେ କରିବ ସମର୍ପଣ ।
ମଣ୍ଡଳେ କରି ସଂସ୍ଥାପନ ॥
ଶ୍ରୀ ନାରାୟଣଙ୍କୁ ଆରାଧି ।
ଷୋଡଶ ଉପଚାର ବିଧି ॥

ଉଦ୍ଧୃତ ପଦ୍ୟଗୁଡ଼ିକ ଅବିକଳ ଅନୁବାଦ ନହେଲେ ମଧ୍ୟ ସଂସ୍କୃତ ଭାଷାରେ କବିଙ୍କର କେତେଦୂର ଦଖଲ ଥିଲା, ଏହାଦ୍ୱାରା ସହଜରେ ଅବ-ଧାରିତ ହୁଏ । ହରିକୃଷ୍ଣ ଜଣେ ଶ୍ରମଶୀଳ ବ୍ୟକ୍ତିଥିଲେ । ରାଜକାର୍ଯ୍ୟ ଦେବକାର୍ଯ୍ୟ ଓ ନିଜର ବୃତ୍ତି ନିର୍ବାହ କଲା ବାଦ ଯେଉଁ ଅବସର ପ୍ରାପ୍ତ ହେଉଥିଲେ, ତାହା ପରମାର୍ଥିକ ଚିନ୍ତା ଓ କବିତା ରଚନାରେ ବିନିଯୋଗ କରୁଥିଲେ । ହରିକୃଷ୍ଣ ଅନେକଠାରେ ଆପଣାକୁ କବି ବୋଲି ପରିଚୟ ଦେଇ ଅଛନ୍ତି । ଏହାଙ୍କୁ ଏହି ଉପାଧି କିଏ ଦେଇଥିଲା, ଜାଣିବା କଷ୍ଟସାଧ୍ୟ । କିନ୍ତୁ ତାହାଙ୍କର ଅନେକ ଚଉପଦୀ, ରାଜା ଗଜପତି ନାରାୟଣ ଦେବଙ୍କ ନାମରେ ଉତ୍ସୃଷ୍ଟ ହୋଇଥିବାର ଦେଖି ଅନୁମାନ ହୁଏ, ଗଜପତି ଦେବ ଏହାଙ୍କୁ ଏହି ଉପାଧିରେ ଭୂଷିତ କରିଥିଲେ ।

ହରିକୃଷ୍ଣ କେଉଁ ସମୟରେ ଜନ୍ମ ଗ୍ରହଣ କରିଥିଲେ, ଜଣାନାହିଁ । ଏହାଙ୍କ ଗ୍ରନ୍ଥରେ ମଧ୍ୟ ଏ ବିଷୟରେ କୌଣସିଠାରେ କିଛି ଲେଖା ନାହିଁ । ୧୮୬୨ ଖ୍ରୀଷ୍ଟାବ୍ଦରେ ଲକ୍ଷ୍ମୀପୁର ଗ୍ରାମର ଚିରସ୍ଥାୟୀ ବନ୍ଦୋବସ୍ତ କରାଯାଇ ଯେଉଁ ସନଦ୍ ପ୍ରଦତ୍ତ ହୋଇଥିଲା, ତହିଁରେ ଏତିକି ଲିପିବଦ୍ଧ ହୋଇଅଛି :— "ପାରଳାଖେମୁଣ୍ଡିର ଜଗନ୍ନାଥ ମୂର୍ତ୍ତିଙ୍କୁ ଚିତ୍ର କରିବା ସକାଶେ ପାରଳାଖେମୁଣ୍ଡିର ରାଜା ଗଜପତି ନାରାୟଣ ଦେବ ହରିକୃଷ୍ଣଙ୍କୁ ଏହି ଲକ୍ଷ୍ମୀପୁର ଗ୍ରାମ ପ୍ରଦାନ କରିଥିଲେ । ହରିକୃଷ୍ଣଙ୍କ ବଂଶଧରମାନେ କହନ୍ତି, ଏଇ ଗ୍ରାମ ଦେବେ ପ୍ରାୟ ୧୦୦ ବର୍ଷ ହୋଇଥିବ । କିନ୍ତୁ କେତେକ ପ୍ରାଚୀନ ରେକର୍ଡ଼ ପରିଶୀଳନ କରି ଆମ୍ଭେ (ଇନାମ କମିଶନର) ଦେଖି ପାରିଅଛୁଁ, ପ୍ରାୟ ୧୬୦ ବର୍ଷ ତଳେ ଏହି ଲକ୍ଷ୍ମୀପୁର ହରିକୃଷ୍ଣଙ୍କୁ ପ୍ରଦତ୍ତ ହୋଇଅଛି ।" ହରିକୃଷ୍ଣଙ୍କ ବଂଶଧରମାନଙ୍କ ଗଣନା ଯଦି ସତ୍ୟ ହୋଇଥାଏ, ତେବେ ହରିକୃଷ୍ଣ ୧୭୬୨ ଖ୍ରୀଷ୍ଟାବ୍ଦରେ (୧୮୬୨-୧୦୦) ଲକ୍ଷ୍ମୀପୁର ପ୍ରାପ୍ତ ହୋଇଥିବେ । ନତୁବା ଇନାମ କମିଶନରଙ୍କ ଗଣନା ଯଦି ସତ୍ୟ ହୋଇଥାଏ, ତେବେ ଗଜପତି ନାରାୟଣ ଦେବ ୧୭୦୨ ଖ୍ରୀଷ୍ଟାବ୍ଦରେ (୧୯୬୨-୧୬୦) ହରିକୃଷ୍ଣଙ୍କୁ ଲକ୍ଷ୍ମୀପୁର ଦେଇଥିବେ । ହରିକୃଷ୍ଣଙ୍କ କାର୍ଯ୍ୟ ପ୍ରବଣତା ଦେଖି ଏହି ଗ୍ରାମ ପୁରସ୍କାର ଦିଆଯାଇଥିବ, ଏଥିରେ ସନ୍ଦେହ ନାହିଁ । ପୁରସ୍କାର ଯୋଗ୍ୟ ପ୍ରବୀଣତା ପ୍ରାପ୍ତ ହେଲା ବେଳକୁ ହରିକୃଷ୍ଣଙ୍କ ବୟଃକ୍ରମ ୪୦ରୁ ଊଣା ହୋଇନଥିବ । ତାହାହେଲେ, ହରିକୃଷ୍ଣ ତାହାଙ୍କ ବଂଶଧରମାନଙ୍କ ଗଣନାନୁସାରେ ୧୭୨୨ ଖ୍ରୀଷ୍ଟାବ୍ଦରେ, ନତୁବା ଇନାମ କମିଶନରଙ୍କ ଗଣନାନୁସାରେ ୧୬୬୨ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିବେ ।

GPNanda Colln., Digitized by srujanika@gmail.com

ଏକାଦଶୀମାହାତ୍ମ୍ୟ ଓ ଗୋପୀନାଥ ଜଣାଣ ପ୍ରଭି ହରିକୃଷ୍ଣ ଅନେକ ଚଉପଦୀ ଓ ଚଉତିଶା ରଚନା କରିଅଛନ୍ତି । 'ରସ ତାଣ୍ଡବ' ନାମରେ ଖଣ୍ଡିଏ ଗ୍ରନ୍ଥ ଏ ରଚନା କରିଥିବାର କେହି କେହି କହନ୍ତି, କିନ୍ତୁ ଏହା ଆମେ ଦେଖିନାହୁଁ ।



ମାଧବୀ ପ୍ରେସ୍, ଉଦୟପୁର, କଟକ-୭୫୩୦୦୯

GPNanda Colln., Digitized by srujanika@gmail.com